

## ଡକ୍ଟର ବସନ୍ତ କିଶୋର ସାହୁ

କଟକ ଜିଲ୍ଲାର କୁସୁପୁର ଗ୍ରାମରେ ଜନ୍ମ । ସଂପ୍ରତି ସୁନାବେଡାସ୍ଥ ଏରୋନଟିକ୍‌ସ କଲେଜର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗର ଅଧ୍ୟାପକ । ଓଡ଼ିଆ ମୌଖିକ ଶିଶୁ-ସାହିତ୍ୟ ଶୀର୍ଷକରେ ଗବେଷଣା କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ପ୍ରାପ୍ତ । ଜଣେ ସୃଜନଶୀଳ ଶିଶୁ-ସାହିତ୍ୟିକ ଓ ଗବେଷକ ଭାବେ ସୁଖ୍ୟାତି ରହିଛି । ଓଡ଼ିଆ, ଇଂରାଜୀ, ହିନ୍ଦୀ ଓ ବଙ୍ଗଳାରେ ପ୍ରାୟ ୩୦ଖଣ୍ଡ ପୁସ୍ତକ ପ୍ରକାଶିତ । ବଗଲାବଗୁଲୀ ଶିଶୁ ପତ୍ରିକା ସହିତ ତାଙ୍କ ସମ୍ପାଦନାରେ ୫୦ରୁ ଊର୍ଦ୍ଧ୍ୱ ପତ୍ରପତ୍ରିକା ପ୍ରକାଶିତ । ଭୁବନେଶ୍ୱର ପୁସ୍ତକମେଳା, ରାଜଧାନୀ ପୁସ୍ତକମେଳା ଓ ମୀନାବଜାର ପୁରସ୍କାର ସମେତ ୨୦ରୁ ଅଧିକ ଅନୁଷ୍ଠାନରୁ ପୁରସ୍କୃତ ଓ ସମ୍ବର୍ଦ୍ଧିତ । କୋରାପୁଟ ପରିକ୍ରମା, ଓଡ଼ିଶାର ଲୋକନାଟ୍ୟ, ସାଂପ୍ରତିକ ଓଡ଼ିଆ ଶିଶୁ କବିତା। ମନୀନ୍ଦ୍ର ଅଭିନନ୍ଦନ ଗ୍ରନ୍ଥ, ସାରସ୍ୱତ ସାଧକ ଡକ୍ଟର ଜଗନ୍ନାଥ ମହାନ୍ତି ଏବଂ ନନ୍ଦକିଶୋର ସାମଲ ରଚନାବଳୀ ସମେତ କୃଷ୍ଣଚନ୍ଦ୍ର ଗଜପତି, ମଧୁସୂଦନ, ଫକୀରମୋହନ, ଗୋପବନ୍ଧୁ ଓ ସ୍ୱର୍ଣ୍ଣକ୍ଷେତ୍ର ପରି ଗବେଷଣାଧର୍ମୀ ପୁସ୍ତକ ଓ ପତ୍ରିକା ସଂପାଦନା କରି ନିଜସ୍ୱ ଏକ ସରଣୀ ସୃଷ୍ଟି କରିଛନ୍ତି । ଜଣେ ସୁସଙ୍ଗଠକ, ଛାତ୍ରବତ୍ସଳ ଅଧ୍ୟାପକ ଓ ନିର୍ଭୀକ ବ୍ୟକ୍ତିତ୍ୱ ଭାବରେ ସମସ୍ତଙ୍କର ପ୍ରିୟ । ଉପାନ୍ତ ଅଞ୍ଚଳରେ ଓଡ଼ିଆ ଭାଷା ସାହିତ୍ୟର ସୁରକ୍ଷା ପାଇଁ ସଂପ୍ରତି କାର୍ଯ୍ୟରତ ।

# କାହାକୁ କହିବା

ଡକ୍ଟର ବସନ୍ତ କିଶୋର ସାହୁ
ଅଧ୍ୟାପକ, ଏରୋନଟିକସ୍ କଲେଜ, ସୁନାବେଡା-୭୬୩ ୦୦୨

ପ୍ରକାଶିକା : ବୀଣାପାଣି ସାହୁ, କୁସୁପୁର-୭୫୪୨୮୫, ଜି-କଟକ

ପ୍ରଥମ ପ୍ରକାଶ : ସରସ୍ୱତୀ ପୂଜା, ୨୦୧୧
ଅକ୍ଷର : ଅଗ୍ରଣୀ, ସୁନାବେଡ଼ା-୨
ମୁଦ୍ରଣ: ବିଜୟଲକ୍ଷ୍ମୀ, କଟକ
ମୂଲ୍ୟ : ଟ ୭୦.୦୦

---

**KAHAKU KAHIBA**

**Dr. Basanta Kishore Sahoo**
Lect. in Oriya, Aeronautics College, Sunabeda-2

**Publisher :** Smt. Binapani Sahoo, Kusupur-754285, Cuttack

**First Edition :** Saraswati Puja, 2011
**Letter setting :** Agrani, Sunabeda-2
**Printing :** Bijayalaxmi, Cuttack
**Price :** Rs.70.00

# ଉତ୍ସର୍ଗ

ବର୍ତ୍ତମାନର ଅବକ୍ଷୟ ସଂସ୍କୃତି
ଓ ବିଚାରବୋଧରେ
ଯେଉଁମାନେ ସବୁଠାରୁ ଅଧିକ କ୍ଷତିଗ୍ରସ୍ତ
ସେହିମାନଙ୍କ ହାତରେ
**'କାହାକୁ କହିବା'** କୁ
ଅର୍ପଣ କରୁଛି ।
ସେମାନେ ମୁହଁ ଖୋଲିଲେ
ସାମାଜିକ ପରିବର୍ତ୍ତନ
ନିଶ୍ଚୟ ଘଟିବ ବୋଲି
ମୋର ଆଶା ଓ ବିଶ୍ୱାସ ।

ଧରିତ୍ରୀ କନ୍ହେଇ ସାହୁ

# କୃତଜ୍ଞତା

ପୁସ୍ତକଟିରେ ପ୍ରକାଶିତ ସମସ୍ତ ଲେଖା ପୂର୍ବରୁ ଆକାଶବାଣୀ ଜୟପୁର କେନ୍ଦ୍ରରୁ ପ୍ରସାରିତ ହୋଇ ଶ୍ରୋତାମାନଙ୍କ ଦ୍ୱାରା ଆଦୃତ ହୋଇଛି । ତା ସହିତ ଲେଖାଗୁଡିକ ଅଗ୍ନିସ୍ଫୁଲିଙ୍ଗ, ଶ୍ରୀନନ୍ଦିଘୋଷ ଓ ସ୍ମରଣିକା ଆଦି ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହୋଇ ପାଠକୀୟ ପ୍ରଶଂସା ଲାଭ କରିଛି । କେତେଜଣ ପାଠକଙ୍କ ଅନୁରୋଧ କ୍ରମେ ଏହାକୁ ପୁସ୍ତକ ଆକାରରେ ପ୍ରକାଶ କରାଯାଉଛି । ଏହି ଅବସରରେ ଆକାଶବାଣୀ ଜୟପୁରର କେନ୍ଦ୍ର ନିର୍ଦ୍ଦେଶକ, ସଂପୃକ୍ତ ପତ୍ରପତ୍ରିକାର ସଂପାଦକ, ଶ୍ରୋତା ଓ ପାଠକ ତଥା ପ୍ରକାଶକଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି ।

# କାହାକୁ କହିବା, ଶୁଣିବ କିଏ ?

ସମୟ ବଦଳୁଛି । ତା ସହିତ ଆମ ରୁଚି, ବିଚାର, ଚାଲିଚଳଣି, ଖାଦ୍ୟପେୟ, କଥାବାର୍ତ୍ତା । ଏବେ ନ ଶୁଣିବା କଥା ଶୁଣାଗଲାଣି, ନ ଦେଖିବା କଥା ଦେଖାଗଲାଣି । ସ୍ୱପ୍ନ ସତ ହେଲାଣି । ସବୁଠି ପରିବର୍ତ୍ତନ । ଖାଦ୍ୟପେୟ, ବେଶଭୂଷା । ଏପରିକି ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥର । ଟେଲିଭିଜନ, କମ୍ପ୍ୟୁଟର, ଇଣ୍ଟରନେଟ, ମୋବାଇଲର ସୁବିଧାସୁଯୋଗ । ସବୁଠି ବିଜ୍ଞାନର କାଉଁରୀ ସ୍ପର୍ଶ । ପାରମ୍ପରିକ ଲୋକଗୀତ, ଲୋକନାଚ, ଲୋକଖାଦ୍ୟ, ଲୋକବିଚାର ସବୁ ହଜିଗଲାଣି । ପ୍ରାଚୀନ ଚିଠି ଲେଖିବା ଓ ପଢ଼ିବାର ଉନ୍ମାଦନା ଓ ଭାବପ୍ରବଣତା ସବୁ ବିଜ୍ଞାନର ନିର୍ଜୀବ ପଦାର୍ଥରେ ନାହିଁ । ପାରମ୍ପରିକ ଖାଦ୍ୟପେୟର ମହକ ଫାଷ୍ଟଫୁଡ କଲଚରରେ ନାହିଁ ? ସବୁ ନକଲି ଓ ଭେଜାଲ । ଡାଲି, ଚାଉଳ ପନପରିବା ସବୁ ଅପମିଶ୍ରିତ । ରଙ୍ଗ ଦିଆ ପନିପରିବା ଓ ଭେଜାଲ ଜିନିଷ ଖାଇ ଆମେ କେତେ ସୁସ୍ଥ? ତାହା ବିଚାର କରିବ କିଏ ?

ସବୁ କିଛି ହଜିଗଲାଣି ଆମର । ଭାଇଚାରା ଭାବ, ପରୋପକାର, ନିସ୍ୱାର୍ଥପର ସେବା? ସତ୍ୟ-ଧର୍ମ-ନ୍ୟାୟର ପଥ? ହାଠାତ୍ ଧନୀ ହେବାର ଦୁର୍ବାର ଅଭିଳାଷରେ ଆମ ମାନସିକତା ବନ୍ଧା । ସେଠି ସ୍ୱର୍ଗୀୟ ଭାବନା ଆସିବ କେଉଁଠୁ

ଡାକ୍ତର ରୋଗୀ ଠାରୁ ଲାଞ୍ଚ ଚାହୁଁଛି । ସେବା ପରିବର୍ତ୍ତେ ରୋଗୀ ଶୋଷଣରେ ସ୍ୱାସ୍ଥ୍ୟସେବା ବିପର୍ଯ୍ୟସ୍ତ-ଔଷଧରେ ଭେଜାଲ-ଚିକିତ୍ସକଙ୍କର ଦାୟିତ୍ୱ ଓ କର୍ତ୍ତବ୍ୟରେ ଅବହେଳା । ଶିକ୍ଷକ ଶିକ୍ଷାଦାନକୁ ଗୌଣ ଭାବୁଛି । ଟିଉସନ ଓ କୋଚିଂର ମାୟାଜାଲରେ ଚାଲିଛି ଆଜିର ଶିକ୍ଷା । ମଣିଷ ଗଢ଼ିବା କଥା ଶିକ୍ଷାନୀତିରୁ ଦୂର ହେଲାଣି । କେଉଁଠି ସ୍କୁଲ ଅଛି ତ ଶିକ୍ଷକ ନାହାନ୍ତି । କେଉଁଠି ପିଲା ଶିକ୍ଷକଙ୍କ ଦ୍ୱାରା ବିଭିନ୍ନ ଭାବରେ ନିର୍ଯ୍ୟାତିତ । ଏ କ୍ଷେତ୍ରରେ ଶିକ୍ଷା ବ୍ୟବସ୍ଥା

ଭୁଷୁଡି ପଡିବା ସ୍ୱାଭାବିକ କଥା । ଏଥିପାଇଁ କେବଳ ଶିକ୍ଷକ କଣ ଦାୟୀ ? ସେମାନଙ୍କୁ ଉପଯୁକ୍ତ ସମ୍ମାନ ନାହିଁ । ଜନଗଣନା, ମଧ୍ୟାହ୍ନ ଭୋଜନ, ନିର୍ବାଚନ ଠାରୁ ଆରମ୍ଭ କରି ସବୁ କାମରେ ସେମାନେ ନିୟୋଜିତ । ଏ କ୍ଷେତ୍ରରେ ସେମାନେ ମୂଳ କାର୍ଯ୍ୟରୁ ଦୂରେଇ ରହିବା ସ୍ୱାଭାବିକ କଥା । ଶିକ୍ଷାକର୍ମୀଙ୍କ ଦ୍ୱାରା କ'ଣ ଶିକ୍ଷା ବ୍ୟବସ୍ଥା ଚାଲିବ ? ଏଥିପାଇଁ ଦାୟୀ କିଏ? ଶିକ୍ଷା ବ୍ୟବସ୍ଥା ନା ଶିକ୍ଷକ? ପ୍ରଥମେ ବିଚାର କରାଯାଉ ।

ସେହିପରି ପୁଲିସ୍ ରକ୍ଷକ ହୋଇ ଭକ୍ଷକ ସାଜୁଛି । ହାଜତ ମୃତ୍ୟୁ ଠାରୁ ଆରମ୍ଭ କରି ଲାଞ୍ଚ, ଧର୍ଷଣ, ଗୁଣ୍ଡାମୀ ଆଦି କେତେ କ'ଣ ନୀତିହୀନ କାର୍ଯ୍ୟ ସେମାନଙ୍କର । ସମାଜସେବୀର ସମାଜସେବା ନାହିଁ । ରାଜନୀତିର ପଶାପାଲିରେ ସମସ୍ତେ ଅନ୍ଧ । ଲେଖକ ସ୍ୱାଧୀନଚେତା ନୁହେଁ । ସାମ୍ବାଦିକ ଶସ୍ତା ସମ୍ବାଦ ପରିବେଷଣରେ ମଗ୍ନ । ସେହିପରି ଓକିଲ, ଇଞ୍ଜିନିୟର, କିରାଣୀ, ଅଫିସର ଓ ରାଜନେତା ସମସ୍ତେ ନିଜ ନିଜ ଦାୟିତ୍ୱ, ମୂଲ୍ୟବୋଧ ଓ କର୍ତ୍ତବ୍ୟ ଠାରୁ ଦୂରରେ ।

କଣ ହେଲା ଏ ଯୁଗ । ଏ ସ୍ଥିତିରେ କ'ଣ କରାଯିବ? କିଏ କହିବ । କାହାକୁ କହିବ-ଶୁଣିବ କିଏ ? ସମସ୍ତେ ଗୋଟିଏ ନାଉର ମଞ୍ଜି । ଜାଣିବା ଶୁଣିବା ଲୋକ ଏପରିକି ସରକାର ସବୁ ଦେଖି ଆଖି ବୁଜି ଦେଉଛନ୍ତି । ସେଥିପାଇଁ ଏହି ଘଡିସନ୍ଧି ମୁହୂର୍ତ୍ତରେ ଜନସଚେତନତା ନିହାତି ଆବଶ୍ୟକ । ଆଉ ଏକ ମହାସଂଗ୍ରାମର ଆବଶ୍ୟକତା । ସାଧରଣ ଜନତା ମାତନ୍ତୁ, ତାତନ୍ତୁ ତେବେ ଯାଇ ଏ ସମସ୍ୟାର ସମାଧାନ ହେବ । ତେବେ ଆଉ ଡେରି କାହିଁକି?

ଏଣୁ, ସାଧୁ ସାବଧାନ । ଅନୀତି, ଅନ୍ୟାୟ, ଦୁର୍ନୀତି, ଭ୍ରଷ୍ଟାଚାର ବିରୁଦ୍ଧରେ ମିଳିମିଶି ସ୍ୱର ଉତ୍ତୋଳନ କରନ୍ତୁ । ଯେ କୌଣସି ପରିସ୍ଥିତିରେ ଏକଜୁଟ ହୋଇ କାର୍ଯ୍ୟ କରନ୍ତୁ-ତେବେ ଯାଇ ଏକ ନୂତନ ସକାଳର ଅୟମାରମ୍ଭ ହେବ । ସେହି ନୂତନ ସକାଳର ପ୍ରତୀକ୍ଷାରେ ମୁଁ ....

# ସୂଚିପତ୍ର


| | | |
|---|---|---|
| ୧- | ଆମ ରାସ୍ତାଘାଟ ହାଲ୍‌ଚାଲ୍ | ୧ |
| ୨- | ଛାତ୍ର ପୂଜା | ୬ |
| ୩- | ସର୍ପରେ ଜାତ କଲୁ ମୋତେ | ୧୧ |
| ୪- | ଆପେ ମରି ସଙ୍ଗ ଲୋଡ଼ି | ୧୬ |
| ୫- | ଛୁଞ୍ଚିମୁହାଁଙ୍କ ସମ୍ପର୍କରେ | ୨୨ |
| ୬- | ତୁଣ୍ଡବାଇଦ | ୨୮ |
| ୭- | ନ ଦେଖିଲା ଓଉ | ୩୫ |
| ୮- | ପ୍ରଗଳଭତା ଦୂଷଣ ନୁହେଁ ଭୂଷଣ | ୩୯ |
| ୯- | ଗୋଦରା କୋଡେ ଯେତେ ମାଡେ ସେତେ | ୪୪ |
| ୧୦- | ହାଁ ଜୀ | ୪୮ |
| ୧୧- | ପାଗ ବାନ୍ଧୁ ବାନ୍ଧୁ କଚେରୀ ବରଖାସ୍ତ | ୫୩ |
| ୧୨- | କହି ଜାଣିଲେ | ୫୮ |
| ୧୩- | ସୁବିଧାବାଦୀ ସପକ୍ଷରେ | ୬୩ |
| ୧୪- | ସତ କହିବାକୁ କିଆଁ ଡରିବି | ୬୮ |




# ଆମ ରାସ୍ତାଘାଟ ହାଲ୍‌ଚାଲ୍

ସାଧୁ ଜନେ-ଆଜି କାଲି ଆମ ରାସ୍ତାଘାଟର 'ହାଲ୍' ପୁରାପୁରି 'ବେହାଲ୍'। ଆପଣଙ୍କୁ କ'ଣ ବା କେମିତି କହିବି ? ଆପଣ ସମସ୍ତେ ତ ଭୁକ୍ତଭୋଗୀ-ସବୁତ ନିଜ ଆଖିରେ ଦେଖୁଛନ୍ତି-ଅଭାବ ଅସୁବିଧା ଓ ଦୂରବସ୍ଥା ଅନୁଭବ କରୁଛନ୍ତି । କିନ୍ତୁ, ତା ବିରୁଦ୍ଧରେ ମୁହଁ ଖୋଲି କାହାକୁ କିଛି କହୁ ନାହାନ୍ତି- ଆପଣ ଭାବୁଥିବେ କାଦୁଅରେ ପଶିବି କାହିଁକି ନା ଗୋଡ଼ ଧୋଇବି କାହିଁକି ? ତେବେ ଆପଣ କ'ଣ ଜାଣି ନାହାଁନ୍ତି - ଚେଇଁ ଶୋଇଥିବ ଯିଏ ତାକୁ ଉଠେଇବ କିଏ ? ମୂଳ କଥା ହେଲା, ସତ କଥା କହିବା ପାଇଁ ଆଜି କାହାରି ପାଖରେ ସାହସ ନାହିଁ-ପ୍ରକୃତ ସତ କଥା ଟିକକ ଖୋଲି କହିଦେଲେ କାଳେ ପୈତୃକ ପ୍ରାଣଟା ଚାଲିଯିବ-ଅବା ପିଲାଛୁଆ ଭାସି ଯିବେ ! କିନ୍ତୁ , ମନେ ରଖନ୍ତୁ -ଏ କଳି ଯୁଗରେ ଠାକୁର ନ ସପନେଇଲେ ତାଙ୍କୁ ଭୋଗ ମଧ୍ୟ ମିଳୁନାହିଁ- ଆଉ ଆପଣ ବା କେଉଁ ଗାଈର ଗୋବର ?-ଆପଣ ଯଦି ମୁହଁ ନ ଖୋଲିବେ ତେବେ ଆପଣଙ୍କର ସୁବିଧା ଅସୁବିଧା କଥା କିଏ ବା କାହିଁକି ବୁଝିବ ? ଆପଣ କୁହନ୍ତୁ ବା ନ କୁହନ୍ତୁ -ମୁଁ କିନ୍ତୁ କହିବି । ତା' ପୁଣି ଷୋଳଣା ସତ କଥା କହିବି । କାରଣ ପିଲାବେଳୁ ମୁଁ ପ୍ରାର୍ଥନା ବୋଲିଛି-''ସତ କହିବାକୁ କିଆଁ ଡରିବି, ସତ କହି ପଛେ ମଲେ ମରିବି ।'' ତେବେ, ସତ କହିବାକୁ, ମୁଁ କାହିଁକି ଡରିବି କହିଲେ ? ଅବଶ୍ୟ ସେ ପ୍ରାର୍ଥନା ଏବେ ତା'ର ଚିରନ୍ତନ ମୂଲ୍ୟ ହରାଇ ବସିଲାଣି । କାରଣ ଆମର ମାନବିକ ଅବମୂଲ୍ୟାୟନ ଏତେ ପରିମାଣରେ ଘଟିଲାଣି ଯେ-ଆମ ଭିତରୁ କେହି କେହି କହଲେଣି -

'ସତ କହିବାକୁ ସଦା ଡରିବି, ସତ କହି ମୁହିଁ କିଆଁ ମରିବି ।'

ଏବେ ଏହି ପ୍ରାର୍ଥନାକୁ କଦର୍ଥ କରିଥିବାରୁ କେତେ ତୁମ୍ଭି ତୋଫାନ ହୋଇଗଲା ତାହା କଣ ଆପଣ ଶୁଣି ନାହାନ୍ତି?

ସତରେ, ସତ କହିବାକୁ ଯେମିତି ଆଜି କାହାରି ସାହସ ନାହିଁ- ଯିଏ ସତ କହିଲା, ସିଏ ତିନି ପାଞ୍ଚିରୁ ଗଲା ? କାରଣ ସତ୍ୟ, ଧର୍ମ ଓ ନ୍ୟାୟର ସଂଜ୍ଞା ଆଜି ବଦଳି ଗଲାଣି । ଆପଣ କ'ଣ ଜାଣି ନାହାଁନ୍ତି-ବୁଡ଼ିଗଲା ଲୋକର ଗୋଡ଼ ତଳକୁ ତଳକୁ । କିନ୍ତୁ ମୁଁ ଆପଣଙ୍କୁ ସବୁ ସତକଥା ହିଁ କହିବି । ହଁ, ରାସ୍ତାଘାଟ କଥା ପରା କହୁଥିଲି- ରାସ୍ତାଘାଟର ଆଭିଧାନିକ ଅର୍ଥ ଆପଣ ନିଶ୍ଚୟ ବୁଝିଛନ୍ତି-କିନ୍ତୁ, 'ହାଲ୍‌ଚାଲ୍ ' କହିଲେ ଆପଣଙ୍କୁ ନିଶ୍ଚୟ ଟିକେ ଅବାଗିଆ ଲାଗୁଥିବ-ତେବେ, 'ହାଲ୍ ' କହିଲେ ଅବସ୍ଥା,ବୃତ୍ତାନ୍ତ ଓ

ଦୁଃଖାବସ୍ଥିତି ପରି କେତେକ ଶବ୍ଦ-ଆଉ 'ଚାଲ' କହିଲେ-ରୀତି, ପ୍ରଥା, ପ୍ରଣାଳୀ, ସ୍ୱଭାବ, ଢ଼ଙ୍ଗ ଆଦି କେତେ କ'ଣ ? କିନ୍ତୁ, 'ହାଲ' ସଙ୍ଗରେ ଯେତେବେଳେ 'ଚାଲ'ର ମିଶ୍ରଣ ଘଟୁଛି-ଆମେ ତାକୁ ଖବର ଅନ୍ତର କହୁଛୁ । ତେଣୁ, ମୁଁ ଆପଣଙ୍କୁ ଆଜି ଆମ ରାସ୍ତାଘାଟର ଖବର ଅନ୍ତର କଥା ହିଁ କହିବି ।

ତେବେ କେଉଁଠୁ ଆରମ୍ଭ କରିବି, ତାହା ଠିକ୍ କରି ପାରୁନାହିଁ । କଥାରେ ଅଛି ପରା - ଖଜୁରି ଗଛର କି ଗୁଣ ଗାଇବି, ସେତ ମୂଳରୁ ପାହାଚ ପାହାଚ । ରାସ୍ତା ଘାଟର କେଉଁ ଅବସ୍ଥା କଥା ଆପଣଙ୍କୁ କହିବି ? ରାସ୍ତାତ ରାସ୍ତା-କିନ୍ତୁ, ଆମର ଏଠି ନାନାପ୍ରକାରର ରାସ୍ତା-ଯଥା, ଜାତୀୟ ରାଜପଥ (National Highway), ପ୍ରାଦେଶିକ ରାଜପଥ (State Highway), ତ୍ୱରିତ ରାଜପଥ (Express Highway) ଠାରୁ ଆରମ୍ଭ କରି ସବ୍ ଡ଼ିଭିଜନ ରାସ୍ତା, ବ୍ଲକ୍ ରାସ୍ତା, ପଞ୍ଚାୟତ ରାସ୍ତା, ଗାଆଁ ରାସ୍ତା, ସହର ରାସ୍ତା, ସାହି ରାସ୍ତା, ମୁନିସିପାଲିଟି ରାସ୍ତା, ପିଚୁ ରାସ୍ତା, କଚା ରାସ୍ତା, ମାଟି ରାସ୍ତା, ପାହାଡ଼ିଆ ରାସ୍ତା, ସମତଳ ରାସ୍ତା, ସୀମାନ୍ତ ରାସ୍ତା ଏମତି ଏମିତି ଏତେ ଭାଗରେ ବିଭକ୍ତ ଯେ ସବୁ ବିଷୟରେ ଟିକେ ଟିକେ କହିଲେ ପୋଥିଟିଏ ହେବ । ସେମିତି 'ଘାଟ' କହିଲେ ନଈ ଘାଟକୁ ଆମେ ବୁଝୁ । ଏହାକୁ ଯଦି ବିଭାଜନ କରିବା ତେବେ ପାହାଡ଼ିଆ ନଈଘାଟ, ଛୋଟ ନଈ ଘାଟ, ବଡ଼ ନଈ ଘାଟ, ଚିରସ୍ରୋତା ନଈ ଘାଟ ଏମତି କେତେ ପ୍ରକାରରେ ବିଭାଜନ କରାଯାଇ ପାରିବ । ତେବେ, ଏହି ରାସ୍ତାଘାଟ କଥା କହିଲେ-ଅଖା ଧୋଉଥିବା, ଆଉ ଗୁଣ ଗାଉଥିବା ।

ରାସ୍ତାଘାଟର ସୁବିଧା ଥିଲେ-ସୁରୁଖୁରୁରେ ଆମେ ଗାଡ଼ି ମଟର ଚଢ଼ି, ଗୋଟିଏ ସ୍ଥାନରୁ ଯାଇଁ ଅନ୍ୟ ସ୍ଥାନରେ ପହଁଞ୍ଚି ଯାଉଛୁ-ଗୋଟିଏ ସ୍ଥାନରେ ପ୍ରସ୍ତୁତ ବା ଅମଳ ହେଉଥିବା ଦ୍ରବ୍ୟ ଗାଡ଼ି ମଟରରେ ବୋଝେଇ ହୋଇ, ଅନ୍ୟତ୍ର ବିକ୍ରି ହେଉଛି । ଫଳରେ ଲୋକମାନଙ୍କର ଅଭାବ ଅସୁବିଧା ମେଣ୍ଟି ଯାଉଛି-ଏହା ଫଳରେ ଚାଷୀ ଓ ବ୍ୟବସାୟୀମାନେ ବେଶ୍ ଦି ପଇସା ରୋଜଗାର କରୁଛନ୍ତି । କିନ୍ତୁ, ଆଜିକାଲି ରାସ୍ତାର ଅବସ୍ଥା କଥା ନ କହିଲେ ଭଲ-କହିଲେ କୁଳ କୁଟୁମ୍ବଙ୍କୁ ଲାଜ, ନ କହିଲେ କୁଳ ଭାସି ଯାଉଛି-ନ କହି ବା ମୁଁ କେଉଁଠି ରହି ପାରୁଛି ? ଅଇଲି ଗଲି, ଯାହା ଦେଖିଲି ତାହା କହିଲି ନ୍ୟାୟରେ ଆସନ୍ତୁ ଶୁଣିବା, ଚୁମ୍ବକରେ ଆମ ରାସ୍ତାଘାଟର ହାଲ୍‌ଚାଲ୍ ।

ଆପଣ ସବୁ ଦିନେ ନ ହେଲେ ବି ସପ୍ତାହେ କି ମାସରେ ଥରେ ଅଧେ ଗାଡ଼ି ମଟର ଚଢ଼ି ବିଭିନ୍ନ ରାସ୍ତାରେ ବିଭିନ୍ନ ସ୍ଥାନକୁ ଯାଉଥିବେ-କିନ୍ତୁ, ସେ ସବୁର ଅବସ୍ଥା... କ'ଣ କହିବି ? ନ ଦେଖିଲା ଲୋକତ ପରତେ ଯିବେ ନାହିଁ । ଚାଳକ ଯଦି ମନ ମୂନ ଚଇତନକୁ ଏକାଠି କରି ଗାଡ଼ି ନ ଚଳେଇବ ତେବେ କେତେବେଳେ କେଉଁଠି କ'ଣ ଘଟିବ, ତାହା କିଏ କହିବ ? ବସ୍, ଟ୍ରକ୍, ଜିପ୍ କି କାର ହୋଇଥିଲେ ରକ୍ଷା ଅଛି-କିନ୍ତୁ, ସ୍କୁଟର, ମଟର ସାଇକେଲ୍ ଆଦି ଦୁଇ ଚକିଆ ଯାନର ତ ହାଲତ୍ ସଂପୂର୍ଣ୍ଣ ବିଗିଡ଼ି ଯିବ । ଧକଡ଼ ଚକଡ଼ରେ ପଡ଼୍ ଉଠ୍ ହୋଇ ପଛରେ ବସିଥିବା ଆରୋହୀ ଯେ କେତେବେଳେ କେଉଁଠି ଖସି ନ ପଡ଼ିବ ତାହା କିଏ କହିବ? ଅନେକ ସମୟରେ ଆମେ

ବସ୍‌ରେ ଯାଉଥିବା ସମୟରେ ଗାଡ଼ି ଯେଉଁ ପଡୁଥାଏ ଆଉ ଉଠୁଥାଏ- ସେ ସମୟର କଥା ଏଇଠି ଆପଣ ଟିକେ ମନେ ପକାନ୍ତୁ - ଆପଣ ବିଚରା ଚାଳକ ଉପରେ ଖାଲି ରକ୍ତ ଚାଉଳ ଚୋବାନ୍ତି । କିନ୍ତୁ ସେ ବିଚରା କ'ଣ କରିବ କହିଲେ ? ସେଥିପାଇଁ କିଏ ଦାୟୀ ଆପଣ ବର୍ତ୍ତମାନ ବିଚାର କରନ୍ତୁ । ଏପରି ଧକଡ଼ ଚକଡ଼ ରାସ୍ତାରେ ଯଦି ଗର୍ଭବତୀ ସ୍ତ୍ରୀଟିକୁ ଡାକ୍ତରଖାନା ନିଆଯାଏ ତେବେ ଅଧାବାଟରେ କୁଆଁକୁଆଁ ରାବ ଶୁଭିବା କିଛି ଅସମ୍ଭବ ନୁହେଁ । ଆଉ ବୟସ୍କ ରୋଗୀଟିର ଅବସ୍ଥା କ'ଣ ହେଉଥିବ ତାହା ହିଁ ବିଚାର କରିବା କଥା ।

ଏଥିପାଇଁ ସବୁ ଦୋଷ କ'ଣ ରାସ୍ତାର-ଆମର କ'ଣ କିଛି ଦୋଷ ନାହିଁ- ଆମେ ସବୁ କ'ଣ ଗୋଟିପଣ ତୁଳସୀ ? ଏବେ ଆମମାନଙ୍କ କଥା ଟିକେ ଶୁଣିବା ଆସନ୍ତୁ -ରାସ୍ତାରେ ଗାଡ଼ିର ବେଗ କମାଇବା ପାଇଁ ସୁରକ୍ଷା ବିଭାଗ, ରାଜପଥ ବିଭାଗ ଆଦି ତରଫରୁ ଅନେକ ସ୍ଥାନରେ ହମ୍ପସ୍‌ମାନ ତିଆରି ହୋଇଥିବାର ଆମେ ଦେଖୁ । କିନ୍ତୁ, ଏଥିପାଇଁ କୌଣସି ନୀତିନିୟମ ଥିଲା ପରି ଜଣାଯାଏ ନାହିଁ । କେଉଁଠି ଏହା ଚାଖଣ୍ଡେ ଉଚ୍ଚା ତ ଆଉ କେଉଁଠି ତା' ଠାରୁ କମ୍ ବା ବେଶୀ-ପୁଣି କେଉଁଠି କେଉଁଠି ପାଖାପାଖି ଆଠ କି ଦଶ ହମ୍ପସ୍ ତିଆରି ହୋଇଥାଏ । କିନ୍ତୁ, ଆମେ ଗାଡ଼ି ଚାଳକମାନେ ତା'ଠାରୁ ଆହୁରି ହୁସିଆର ଆଉ ସିଆଣିଆ-ଆମେ ସେ ବାଟେ ଗାଡ଼ି ନନେଇ କଡ଼ ବାଟ ଦେଇ ପାର୍-ଅର୍ଥାତ୍, ସିଧା କଥାରେ କହିଲେ ହମ୍ପସ ହମ୍ପସ ଜାଗାରେ ଆଉ ଆମେ ଆମ ବାଟରେ ।

ଆପଣ ଲକ୍ଷ୍ୟ ରଖିଥିବେ-ଯେଉଁ ରାସ୍ତା ସହର ବଜାର ବା ଜନବସତି ଦେଇ ଯାଇଥିବ ତା'ର ଅବସ୍ଥା କିପରି ଦିନକୁ ଦିନ ବିକଳାଙ୍ଗ ହେବାରେ ଲାଗିଛି । କେଉଁଠି ଏହା ଓସାରିଆ ତ ଆଉ କେଉଁଠି ଅଣଓସାରିଆ-ଯେଉଁଠି ରାସ୍ତା ଅଣଓସାରିଆ, ସେଠି କିଏ ରାସ୍ତା ଉପରକୁ ଦୁଇ ଚାରି ଫୁଟ୍ ମାଡ଼ିଆସି ଘର କରି ଦେଇଛି ତ କିଏ ବାଣିଜ୍ୟ ବ୍ୟବସାୟ କରିବା ପାଇଁ ଅସ୍ଥାୟୀ କେବିନ୍‌ଟିଏ ପକାଇ ଦେଇଛି । କେଉଁଠି କେଉଁଠି ରାସ୍ତା ଅବରୋଧ କରାଯାଇ ଠେଲାଗାଡ଼ିରେ ଜିନିଷ ବିକା ଯାଉଥିବା ଦେଖିବାକୁ ମିଳେ । ଏହା ବ୍ୟତୀତ ରାସ୍ତା କଡ଼ରେ ଆମେ ଇଟା, ପଥର, ମାଟି, ବାଲି, ଗୋଡ଼ି ଆଦି ଆଣି ଜମା କରି ରଖୁ । ପଥଚାରୀମାନେ ହଇରାଣ ହରକତ ହେଲେ ଆମର ଯାଏ କେତେ ଆସେ କେତେ? ଆପେ ବଞ୍ଚିଲେ ବାପର ନାଆଁ କୌଶଳଟିକୁ ପରା ଆମେ ସେଠି ଅତି ସୁନ୍ଦର ଭାବରେ ଆପଣେଇ ନେଇଥାଉ । ଖାଲି କ'ଣ ସେତିକି ରାସ୍ତାରେ ଅଳିଆ ଆବର୍ଜନା ଗଦା କରିବା ଠାରୁ ରାସ୍ତା କଡ଼ରେ ମଳତ୍ୟାଗ କରିବା କେତେକଙ୍କର ଏକ ନିତିଦିନିଆ ଅଭ୍ୟାସରେ ପରିଣତ ହୋଇଛି । ଏ କ୍ଷେତ୍ରରେ ପିଲାଛୁଆଙ୍କ କଥା ଛାଡ଼, ବୟସ୍କମାନେ ମଧ୍ୟ ବାଦ ଯାଉନାହାନ୍ତି । ଥରେ ଯଦି ଏପରି ରାସ୍ତାରେ ଆପଣ ଯିବେ-ସେ ଯେଉଁ ବାସନା ! ପେଟରୁ ପରା ଭାତ ବାହାରି ଆସିବ । ପଥ ପଚାରି ପିତା ଘର ଯିବ, ଆଉ ଅଯୋଧ୍ୟାକୁ ମନେ ନ କଲା ପରି ଆପଣ ଆଉ ଜୀବନରେ କେବେ ସେପରି ରାସ୍ତାରେ ପାଦ ପକେଇବାକୁ ଇଚ୍ଛା କରିବେ ନାହିଁ ।

ଗାଆଁ ବା ସାହି ରାସ୍ତାରେ ଆପଣ ଗଲାବେଳେ ଦେଖିବେ କେଉଁଠି ପିଲାମାନେ କ୍ରିକେଟ ଖେଳୁଛନ୍ତି ତ ଆଉ କେଉଁଠି ଖପରାଡ଼ିଆଁ ବା କବାଡ଼ି ! କିହୋ ! ଖେଳିବାକୁ କ'ଣ ତମକୁ ଆଉ କେଉଁଠି ଯାଗା ମିଳିଲା ନାହିଁ ? ଶେଷକୁ ରାସ୍ତାକୁ ଖେଳ ପଡ଼ିଆ କରି ଥୋଇଲ ? ଖେଳିବା କଥା ଛାଡ଼ନ୍ତୁ-ବଡ଼ ବଡ଼ ସହରର ରାସ୍ତାକଡ଼ରେ ଏପରିକି ମୁଖ୍ୟ ରାସ୍ତାକୁ ମାଡ଼ି ଘରସଂସାର କରି ରହୁଥିବା ଲୋକଙ୍କୁ ମଧ୍ୟ ଦେଖାଯାଏ-ରାସ୍ତାରେ ଟାୟାର ଜାଳି ରୋଷେଇ କରି ଖାଇବା ସେମାନଙ୍କ ପାଇଁ ଏକ ସାଧାରଣ ଘଟଣାରେ ପରିଣତ ହୋଇଛି । ଏଥିପାଇଁ ସେମାନଙ୍କର ଡର କି ଭୟ-କିଛି ନଥାଏ । ଏ ସବୁ କ'ଣ ଆମେ ଦେଖୁନୁ ? କିନ୍ତୁ ପାଟି ଫିଟଉଛି କିଏ ? ଯଦି କେବେ ରାସ୍ତାରେ ଯାଉଥିବା ଗାଡ଼ିଟି ଚାଳକର ଅସାବଧାନତା ଯୋଗୁ ହେଉ କିମ୍ବା ଅନ୍ୟ କାହାକୁ ବଞ୍ଚାଇବା ପାଇଁ ହେଉ-ସେମାନଙ୍କ ଉପରେ ମାଡ଼ିଗଲା, ତେବେ ତ ଖଣ୍ଡ ପ୍ରଳୟ-କିଛି ଆଗ ପଛ ନବୁଝି ନିରୀହ ଗାଡ଼ି ଚାଳକଟିକୁ ଉତ୍ତମ ମଧ୍ୟମ ଦେବାକୁ ମଧ୍ୟ ଆମେ ପଛେଇ ଯାଉନା । ଧନ୍ୟ କହିବା ଆମକୁ ଆଉ ଆମ ଚିନ୍ତାଧାରାକୁ ।

ଆଜିକାଲି ରାସ୍ତାକଡ଼ରେ ବା ଛକଜାଗାମାନଙ୍କରେ ଯେଉଁ ଫାଷ୍ଟ ଫୁଡ୍ କଲଚର ବଢ଼ି ବଢ଼ି ଚାଲିଛି-ସେମାନେ କିପରି ରାସ୍ତା ଅବରୋଧ କରୁଛନ୍ତି, ସେ କଥା କ'ଣ ଆମେ କେବେ ବିଚାର କରିଛେ? ଏହି ଶ୍ରେଣୀର ଦୋକାନଟି ତ ସମ୍ପୂର୍ଣ୍ଣ ରାସ୍ତାରେ-ସେଠି ବସିବାକୁ ସ୍ଥାନ ଥାଏ ନା ଛିଡ଼ା ହେବାକୁ ? ଆଉ ଆମେ ସବୁ ଗ୍ରାହକ ଈଶ୍ୱର, ରାସ୍ତା ମଝିରେ ସାଇକେଲ, ଗାଡ଼ି ଆଦି ଠିଆ କରାଇବା ସହିତ ପ୍ଲେଟ୍ ଗୋଟିଏ ଲେଖା ହାତରେ ଧରି ଯେଉଁ ଅମୃତ ସେବନ କରିବାରେ ଲାଗିଯାଉ ସେଠି ଅନ୍ୟମାନେ ରାସ୍ତା ପାରି ହେବା ପାଇଁ କେମିତି ଅସୁବିଧା ଭୋଗନ୍ତି, ସେ କଥା କ'ଣ ଆମେ କେବେ ବିଚାର କରିଛେ ?

ଏତଦ୍ ଭିନ୍ନ ସମାଜର ଯେତେ ସବୁ ଅସାମାଜିକ ହୀରୋ, ରାସ୍ତା ଅବରୋଧ କରି ଦୌରାତ୍ମ୍ୟ ସୃଷ୍ଟି କରୁଥିବାବେଳେ ସେମାନଙ୍କୁ ଆକଟ କରିବାକୁ ମନ ହୁଏ-କିନ୍ତୁ, ସାହସ କୁଳାଏ ନାହିଁ । ଆଜିକାଲି ଆମକୁ ବା ଆକଟ କରିବ କିଏ ?- ଆମେ ସମସ୍ତେ ତ ସଭ୍ୟ, ଶିକ୍ଷିତ ଆଉ ଗୋଟିଏ ଲାଉର ମଞ୍ଜି- କି ଶିକ୍ଷିତ କି ଅଶିକ୍ଷିତ ବା କି ଯୁବକ କି ବୃଦ୍ଧ । ପୁଣି ରାସ୍ତାଘାଟ ଛକ ଜାଗାମାନଙ୍କରେ ଆମ ପରି ଭଦ୍ର ମୁଖା ପିନ୍ଧା ମଣିଷମାନେ ଏପରି ଅଶ୍ଳୀଳ ଇଙ୍ଗୀତ ପ୍ରଦାନ କଲେଣି ଯେ ଝିଅବୋହୂମାନେ ଏକା ଏକା ରାସ୍ତାକୁ ବାହାରିବାକୁ ଭୟ କଲେଣି ।

କେଉଁଠି କେଉଁଠି ସାଇକେଲ କି ମଟର ସାଇକେଲରେ ଗଲାବେଳକୁ ଆମେ ଦେଖିବା ହଠାତ୍ ଛୁଆଟିଏ କେଉଁଠୁ ଆମ ଗାଡ଼ି ଆଗକୁ ଚାଲି ଆସିଛି-କା'ର ଏ ପିଲା ଆପଣ ପାଟି କଲେ ମଧ୍ୟ କେହି ଶୁଣିବେ ନାହିଁ । ସେଠି ପାଟି କରି ପଚାରିବାକୁ ଇଚ୍ଛା ହୁଏ-ପିଲାଙ୍କ ଦାୟିତ୍ୱ ଯଦି ନ ନେଇ ପାରିବ ତେବେ ପିଲା ଜନ୍ମ କରୁଛ କାହିଁକି? ଦେଶର ଜନସଂଖ୍ୟା କେଉଁଠି ଯାଇ ପହଁଞ୍ଚିଲାଣି । ନିଜ ପିଲାପିଲିଙ୍କୁ ଲଗାମହୀନ କରି ଛାଡ଼ିଦେବାକୁ ମନ ମାନୁଛି କେମିତି ? ଏହା ସହିତ ରାସ୍ତାରେ ଗାଈଗୋରୁ ବାନ୍ଧିବା

ସହିତ ଗୃହପାଳିତ ପଶୁମାନଙ୍କୁ କିପରି ମହାଦେବଙ୍କ ଷଣ୍ଢ ପରି ଫୁଲାଫାଙ୍କିଆ ଛାଡ଼ି ଦିଆଯାଉଛି-ତାର ପ୍ରମାଣ ଆପଣ ରାସ୍ତାଘାଟରେ ବୁଲୁଥିବା ଦଳଦଳ ଗାଈ, ଗୋରୁ, ଷଣ୍ଢ, ମଇଁଷି, ଘୁଷୁରି ଓ ଗଧଙ୍କର ରାସ୍ତା ଅବରୋଧ କରି ବିଶ୍ରାମ ନେବାରୁ ଜାଣି ପାରିବେ-ବେଳେବେଳେ ବି ସେମାନେ କିପରି ନାନାପ୍ରକାର ଦୌରାତ୍ମ୍ୟ ସୃଷ୍ଟି କରନ୍ତି, ତାହା ମଧ୍ୟ ଆପଣ ଦେଖୁଥିବେ? ଏଥିପାଇଁ ବିଚରା ବୁଦ୍ଧିହୀନ ପଶୁ ନା ଆମେ କିଏ ଦାୟୀ? ତାହା ଆପଣମାନେ ହିଁ ବିଚାର କରନ୍ତୁ । ଏ ସବୁ ବ୍ୟତୀତ ରାସ୍ତାରେ କିପରି ବାଉଁଶ, ଟାୟାର କି ପଥର ପକେଇ ଗାଡ଼ିମଟର ଅଟକା ଯାଉଛି-ଆଉ ଜୋରଜୁଲମ କରି ଚାନ୍ଦା ଆଦାୟ କରାଯାଉଛି-ତାହା ଆପଣ ନିଶ୍ଚୟ ଦେଖୁଥିବେ-ଏହି ଚାନ୍ଦା ପୁଣି ଗଣେଶ ବା ସରସ୍ୱତୀ ପୂଜା ଠାରୁ ଆରମ୍ଭ କରି କଲେଜ ବା ମନ୍ଦିର ନର୍ମାଣ ପାଇଁ-କେଉଁଠି କେଉଁଠି ବି କ୍ରିକେଟ ଟୁର୍ଣ୍ଣାମେଣ୍ଟ ପାଇଁ ବା ଅନ୍ୟ କିଛି ଆଳ ଦେଖାଇ-ଆଉ କିଛି ଦିନ ଗଲେ ଏକୋଇଶା କି ଜନ୍ମଦିନ ପାଇଁ ଯେ ଚାନ୍ଦା ମଗା ନଯିବ ତାହା କିଏ କହିବ? ତା ସହିତ ନକ୍ସଲ ଠାରୁ ଆରମ୍ଭ କରି ସାଧାରଣ ଜନତା କିପରି ସବୁ କାମ ପାଇଁ ରାସ୍ତା ଅବରୋଧ କରୁଛନ୍ତି ତା ସହିତ ଆପଣ ନିଶ୍ଚୟ ଅବଗତ ଥିବେ । କିନ୍ତୁ ଏହାର ସମାଧାନ ହେଉଛି କେଉଁଠି? ସବୁ କେବଳ ପ୍ରଶ୍ନବାଚୀ ହୋଇ ରହିଯାଉଛି ସାଧାରଣ ଜନତାଙ୍କ ପାଇଁ ।

ଆଗେ ଧର୍ମ ଅର୍ଜନ ପାଇଁ ରାସ୍ତା କଡରେ ଲୋକ ଗଛ ଲଗାଉଥିଲେ କିମ୍ବା କୂଅଟିଏ ଖୋଳୁଥିଲେ-କିନ୍ତୁ, ଆଜିକାଲି କୂଅ କଥା ଦୂରେ ଥାଉ, ଲଗା ଯାଇଥିବା ଗଛଟିଏ ମଧ୍ୟ ରହୁନାହିଁ । ସେଥିପାଇଁ ପାଦ ଚଲା ପଥିକ କି ସାଇକେଲ ଆରୋହୀ କି ପ୍ରକାର ହଇରାଣ ହେଉଛନ୍ତି, ସେ କଥା କ'ଣ ଆମେ କେବେ ବୁଝୁଛେ? ଦେଶ ସ୍ୱାଧୀନ ହେବାର ତେଷଠି ବର୍ଷ ବିତିଗଲାଣି-ଆଜି ଯାଏ ସବୁ ଗାଆଁକୁ ସବୁଦିନିଆ ରାସ୍ତାଟିଏ ହୋଇପାରିଲା ନାହିଁ-ଯେଉଁଠିକି ରାସ୍ତା ନାହିଁ, ସେଠିକାର ଲୋକେ କିପରି ଅଛନ୍ତି-ସେ କଥା ବୁଝିବାକୁ କ'ଣ ଆଜି କାହା ପାଖରେ ସମୟ ଅଛି ? ସରକାରୀ ସୁବିଧା ସୁଯୋଗ ସେଠିକାର ଲୋକଙ୍କ ପାଖରେ ପହଁଞ୍ଚିଲା କି ନାହିଁ, ସେ କଥା ସମୀକ୍ଷା କରିବ କିଏ ?-ବଡ଼ବଡ଼ିଆଙ୍କ ଗାଡ଼ିତ ସେଠିକୁ ଯାଇ ପାରିବ ନାହିଁ । ରାସ୍ତାଘାଟ ଯେ ତିଆରି ନ ହେଉଛି ସେ କଥା ନୁହେଁ-କେଉଁଠି ନିମ୍ନଧରଣର କାମ ହୋଇ ରାସ୍ତା ନଷ୍ଟ ହେଉଛି ତ -କେଉଁଠି ଆଦୌ କାମ କରାନଯାଇ ଫଲସ୍ ବିଲ୍ ଜରିଆରେ ସରକାରୀ ତହବିଲ ଲୁଣ୍ଠନ ଚାଲିଛି-ଏ ସବୁ ଜାଣି ମଧ୍ୟ ଆମେ କିଛି ନ ଜାଣିବାର ଛଳନା କରୁଛୁ ।

ଏଣୁ, ସାଧୁ ସାବଧାନ- ଆପଣ ଏବେ ମୁହଁ ଖୋଲନ୍ତୁ -ସତ୍ୟ ପ୍ରକାଶ କରନ୍ତୁ -ଅନ୍ୟାୟ, ଅନୀତି ଓ ଦୁର୍ନୀତିର ବିରୋଧ କରନ୍ତୁ -ତେବେ ଆପଣ ବଞ୍ଚିବେ-ଦେଶ ବଞ୍ଚିବ -ଆଉ ଆମ ରାସ୍ତାଘାଟର ଅବସ୍ଥା ସୁଧୁରିବ । ଏବେ ଆପଣ ବିଚାର କରନ୍ତୁ, ମୁଁ ସତ କହିଲି ନା ମିଛ-ଆପଣ ଯଦି ମୁହଁ ନ ଖୋଲିବେ, ତେବେ ନେଡ଼ିଗୁଡ଼ କହୁଣୀକୁ ବୋହିଗଲେ ଆଉ କିଛି ଉପାୟ ନ ଥିବ । ❑❑❑

# ଛାତ୍ର ପୂଜା

ସମୟ ହେଉଛି ସବୁଠାରୁ ବଡ଼ ବଳବାନ । ତାକୁ ଆୟତ୍ତ କରିବାକୁ ମଣିଷ ସର୍ବଦା ଚେଷ୍ଟା କରେ । କିନ୍ତୁ, ସେ କ'ଣ କେବେ ତା ହାତରେ ଧରାଦିଏ ? ସୁନାହରିଣୀ ପରି ସେ ତା' ହାତରୁ ଚଟ୍ କରି ଖସି ଚାଲିଯାଏ । ସ୍ୱ ଇଚ୍ଛାରେ ସେ ବଦଳିବାରେ ଲାଗେ । ସମୟ ସହିତ ତାଳ ଦେଇ ଆମର ପାରିପାର୍ଶ୍ୱିକ ଅବସ୍ଥା, ଆଚାର ବିଚାର, ଚାଲିଚଳଣି ସବୁକିଛି ବଦଳିଯାଏ । ସ୍ୱପ୍ନରେ ଭାବି ନଥିବା କଥା ଦେଖିଲାବେଳକୁ ଦିନେ ସତ ହୋଇଯାଏ । ଅସିଆ କାଳର ମସିଆ ପରମ୍ପରା ଘସିମାଜି ହୋଇ ନୂଆ ଚକ୍‌ଚକ୍ ଦିଶେ ।

କାଲି ଆଉ ଆଜି ମଧ୍ୟରେ ଆକାଶ ପାତାଳ ଫରକ । ଆଜି ଚାରିଆଡେ ପରିବର୍ତ୍ତନର ଯେଉଁ ହାଓ୍ୱା ବହୁଛି, ଏହାର ପରିଣତି କ'ଣ ହେବ ତାହା କ'ଣ ଆମେ କେହି ଗଭୀର ଭାବେ ଭାବିଛେ ? ଆପଣ ଭାବୁଥିବେ ମୁଁ ଜଣେ ଦାର୍ଶନିକ ବା ସମାଜ ସୁଧାରକ ବୋଧେ । ନଚେତ୍ ଏତେ ବଡ଼ ବଡ଼ କଥା କୁହନ୍ତି ବା କାହିଁକି ? ଛି ଛି- ମୁଁ ବା କେଉଁ ଗାଈର ଗୋବର ଯେ-ଆପଣମାନଙ୍କ ପରି ସାଧାରଣ ମଣିଷଟିଏ ମାତ୍ର । ଗଲି ଆଇଲି, ଯାହା ଦେଖିଲି ତାହା କହିଲି ନୀତିକୁ ଆପଣେଇ ନେଇ ଆପଣମାନଙ୍କ ପରି ଜ୍ଞାନୀ, ଗୁଣୀମାନଙ୍କ ଆଗରେ କେବଳ କିଛି କହିବାକୁ ସାହସ କରୁଛି । ଏହାର ପରିଣତି କ'ଣ ହେବ ତା ମୁଁ ନିଜେ ବି ଜାଣେ ନାହିଁ ।

ଆଜିର ପରିବର୍ତ୍ତନଶୀଳ ଆଧୁନିକ ସମାଜରେ ଆମର ରୁଚି, ବ୍ୟବହାର ଓ ଭାବାବେଗ କ୍ରମେ ବଦଳିବାରେ ଲାଗିଛି । ସ୍ନେହ, ଶ୍ରଦ୍ଧା, ଆଦର, ମାନବିକତା, ମୂଲ୍ୟବୋଧ, ଭକ୍ତି, ସମ୍ମାନ, ଆଦି ଦେବସୁଲଭ ଗୁଣାବଳୀ କଥା ଆଜିର ପିଲାମାନେ ବୋଧେ ଭୁଲି ଗଲେଣି । ଆଜି ସମସ୍ତେ ସାକ୍ଷରତା ଓ ଶିକ୍ଷା ବିସ୍ତାର ସମ୍ପର୍କରେ ଲମ୍ବା ଲମ୍ବା ଭାଷଣ ଦେଉଛନ୍ତି । ଗାଆଁ ଗାଆଁରେ ସ୍କୁଲ କଲେଜ ଖୋଲା ଚାଲିଛି । ପ୍ରତି ବର୍ଷ ଲକ୍ଷ ଲକ୍ଷ ଛାତ୍ରଛାତ୍ରୀ ଉଚ୍ଚ ଶିକ୍ଷା ଲାଭ କରି ଚାକିରି ବଜାରରେ ପ୍ରବେଶ କରୁଛନ୍ତି । ଓଡ଼ିଶାରେ ଆଜିକାଲି ଇଞ୍ଜିନିୟରିଂ କଲେଜ ସଂଖ୍ୟା ଶହେ ଛୁଇଁଲାଣି । ଯାହା ଉପରକୁ ଟେକାଟିଏ ପକାଇବ ସେ ଜଣେ ଇଞ୍ଜିନିୟର । ମେଡିକାଲ କଲେଜ ସଂଖ୍ୟା ସେମିତି

ବଢ଼ି ବଢ଼ି ଚାଲିଛି । ଏହି ସବୁ ପଇସା ଦିଆ ପାଠ ପଢ଼ା ଫଳରେ ପ୍ରକୃତ କେତେ ଜଣ କୁଶଳୀ ଇଂଜିନିୟର କି ଡାକ୍ତର ବାହାରୁଛନ୍ତି ତାହା ଜାଣିବାର କଥା ।

ଉଚ୍ଚଶିକ୍ଷାର ପ୍ରମାଣପତ୍ର ଧରି ଶିକ୍ଷିତ ଛାତ୍ରମାନେ ନିଜନିଜର ଧେଣ୍ଡୁରା ପିଟୁଛନ୍ତି । କିନ୍ତୁ, ଯେଉଁଠି ସେମାନଙ୍କ ଠାରେ ଦେବ ସୁଲଭ ଗୁଣାବଳୀ ପରିବର୍ତ୍ତେ ଅମାନୁଷିକ ଓ ପଶୁ ପ୍ରବୃତ୍ତିର ମାତ୍ରା ବଢିବଢି ଚାଲିଛି-ସେଠି ସମସ୍ତେ ଶିକ୍ଷିତ କହିବାର କ'ଣ ମୂଲ୍ୟ ରହିଛି କହିଲେ ? ମୋ କଥାର ମୂଲ୍ୟ ଖାଲି ଆପଣମାନେ ଟିକେ ସହୃଦୟତାର ସହିତ ବିଚାର କରନ୍ତୁ ।

କହିଲେ  କୁଳ କୁଟୁମ୍ବଙ୍କୁ ଲାଜ-ନ କହିଲେ କୁଳ ଭାସି ଯାଉଛି । ନ କହି ପାଟିରେ ତାଲା ପକେଇ ମୁଁ ବା କେଉଁଠି ଚୁପ୍ ହୋଇ ରହିପାରୁଛି ?

ପ୍ରାଚୀନ କାଳର ଗୁରୁଶିଷ୍ୟ ପରମ୍ପରାରେ ଗୁରୁ ଓ ଛାତ୍ରଙ୍କ ମଧ୍ୟରେ ପବିତ୍ର ସୁ-ସମ୍ପର୍କ ରହୁଥିଲା । ଆଜିକାଲି ପରି ସେ ସମୟରେ ବ୍ୟବସାୟିକ ମନୋବୃତ୍ତି  ନଥିଲା । ଗୁରୁଙ୍କୁ ଛାତ୍ରଟିଏ ବ୍ରହ୍ମା,ବିଷ୍ଣୁ ଓ ମହେଶ୍ୱର ଭାବି ଭକ୍ତି କରୁଥିଲା । ପ୍ରଗାଢ଼ ଭକ୍ତି ଓ ବିଶ୍ୱାସବୋଧ ହେତୁ ଆରୁଣି ଓ ଉପମନ୍ୟୁ ପରି ଛାତ୍ରମାନେ ନିଜ ଜୀବନକୁ ଭ୍ରୂକ୍ଷେପ ନକରି ଗୁରୁଙ୍କର ଆଦେଶକୁ ଅକ୍ଷରେ  ଅକ୍ଷରେ ପାଳନ କରୁଥିଲେ । ସେମାନଙ୍କର ଗୁରୁଭକ୍ତି ଆଜି କିମ୍ବଦନ୍ତୀ ବା ଆଦର୍ଶ କାହାଣୀ ହୋଇ ଆମ ପାଖରେ  ରହିଯାଇଛି । କର୍ପୂର ନାହିଁ କି ତାର ବାସ୍ନା ନାହିଁ-ଖାଲି କନାଟା କେବଳ ଅତୀତର ପବିତ୍ର ପରମ୍ପରାର କଥା କହିବାକୁ ପଡ଼ି ରହିଛି ଯାହା ।

ଏକଲବ୍ୟ ପରି ଶିଷ୍ୟର ଗୁରୁ ଦକ୍ଷିଣା ପ୍ରଦାନ ଆମ ସମସ୍ତଙ୍କ ପାଇଁ ଏକ ଆଦର୍ଶ ଓ ଶିକ୍ଷାର  ବିଷୟ । ଏକଲବ୍ୟ ସିନା ନିଜ ଡାହାଣ ହାତର ବୃଦ୍ଧାଙ୍ଗୁଳିକୁ ହସି ହସି ଗୁରୁଦକ୍ଷିଣା ଦେଇ ପାରିଲା-କିନ୍ତୁ, ଆଜିର ଛାତ୍ରକୁ ଗୁରୁଦକ୍ଷିଣା କଥା କହିଲେ, ସେ ହସି ହସି ଉଡ଼ାଇ ଦେବ । ବରଂ, ଗୁରୁଦକ୍ଷିଣା କଥା ଉଠାଉଥିବା  ଗୁରୁଙ୍କ ଆଖିରେ ନିଜ ଡାହାଣ ହାତର ବିଶି ଆଙ୍ଗୁଠି ଗୁଞ୍ଜି ଦେବାକୁ ପଶ୍ଚାତ୍‌ପଦ ହେବ  ନାହିଁ ।

ପ୍ରାଚୀନ କାଳରେ ଗୁରୁ ପୂଜା ପରମ୍ପରା ପ୍ରଚଳିତ ଥିବା ଆମେ  ଜାଣିଛେ । ମାତୃ ପୂଜା, ପିତୃ ପୂଜା ଆଦି ପରମ୍ପରା ମଧ୍ୟ ପ୍ରଚଳିତ ଥିଲା । କିନ୍ତୁ, ଆଜି ଛାତ୍ର ପୂଜା କଥା କହିଲା ବେଳେ  ଆପଣଙ୍କୁ  ନିଶ୍ଚୟ କେମିତି ଟିକେ ଅଡୁଆ ଅଡୁଆ ଲାଗୁଥିବ ? ଅଡୁଆ ଲାଗିଲେ ମଧ୍ୟ ଏହାର ସତ୍ୟତା ରହିଛି । ଆରୁଣି, ଉପମନ୍ୟୁ ଓ ଏକଲବ୍ୟ ପରି ଛାତ୍ରମାନେ କ'ଣ ପୂଜାର ଯୋଗ୍ୟ ନୁହଁନ୍ତି? କିନ୍ତୁ, ସେପରି ଛାତ୍ର କ'ଣ ଆଜିର ସମାଜରେ ଅଛନ୍ତି ?

ସାମ୍ପ୍ରତିକ କାଳର ଛାତ୍ରମାନଙ୍କର ଶଠତା, ହିଂସ୍ର ଆଚରଣ, ଅପାରମ୍ପରିକ ରୁଚିବୋଧ ସହିତ ଚାରିଦଉଡ଼ିକଟା ମନୋବୃତ୍ତି ପାଇଁ ଅଧିକାଂଶ ଶିକ୍ଷକ ସେମାନଙ୍କୁ

ଭୟ କରିବାକୁ ଆରମ୍ଭ କଲେଣି । ଏପରି ଛାତ୍ରମାନଙ୍କୁ ଦେଖୁ ଦେଖୁ ଶିକ୍ଷକମାନେ ଭୟ କରି ନିଜେ ବାଟ ଭାଙ୍ଗି ଯିବାକୁ ଉଚିତ୍ ମନେ କରୁଛନ୍ତି । ଆଲୋ ସଖି, ଆପଣା ମହତ ଆପେ ରଖିବା ନ୍ୟାୟକୁ ଆପଣେଇ ନେଇ କେତେକ ଶିକ୍ଷକ କହୁଛନ୍ତି-

ଆହେ ଛାତ୍ର, ତୁମକୁ ଆମର କୋଟିଏ ଜୁହାର
ପାଠ ପଛେ ନପଢ଼, ହୁଅ ଆମ ଆଗୁ ଦୂର ।

ଆଉ କେତେକ ମଧ୍ୟ "ଛାତ୍ର ଛତ୍ରା ଏକ ପଦ, ଆକାର ଭେଦ ଶବଦ" ପରି ନୂତନ ଶ୍ଳୋକର ସୃଷ୍ଟି କରିଥିବା ଜଣାଯାଏ । ଛାତ୍ରମାନେ ମଧ୍ୟ ସେମାନଙ୍କ ପାଇଁ ଉଦ୍ଦିଷ୍ଟ ଶ୍ଳୋକର ସଂଜ୍ଞାକୁ ବଦଳେଇ ଦେବାର ଦେଖାଯାଏ । ପୂର୍ବେ,"ଛାତ୍ରାଣାଂ ଅଧ୍ୟୟନଂ ତପଃ' ଅର୍ଥାତ୍, ଅଧ୍ୟୟନ ଛାତ୍ର ପାଇଁ ତପସ୍ୟା ପରି ଯାହା କୁହାଯାଉଥିଲା, ତାକୁ ଏବେ କେତେକ ଅନାମଧେୟ ଛାତ୍ର ବଦଳେଇ କହିଲେଣି-

ବହି ଖାତା ସବୁ ଚୂଲୀକୁ ଯାଉ,
ବିନା ଅଧ୍ୟୟନେ ପାଶ ହେଉ ।

ଶୁଣାଯାଏ ଆଜିର ଛାତ୍ର ବିନା ଗୁରୁ ଓ ବିନା ଅଧ୍ୟୟନରେ ପରୀକ୍ଷା ରୂପକ ବୈତରଣୀ ପାରି ହେବାକୁ ସକ୍ଷମ ହେଉଛନ୍ତି । ଟଙ୍କା ପକାଇ ଦେଲେ ଆଜି ସବୁ କିଛି ସମ୍ଭବ ହେଉଛି । ଏହାର ସତ୍ୟାସତ୍ୟ ଆପଣମାନେ ନିଜେ ପରୀକ୍ଷା କେନ୍ଦ୍ର କିମ୍ବା ମୂଲ୍ୟାୟନ କେନ୍ଦ୍ର ନିକଟରେ ହେଉଥିବା ଭିଡ଼ରୁ ବେଶ୍ ଅନୁମାନ କରୁଥିବେ । ଆପଣମାନେ ତ ସ୍ୱଚକ୍ଷୁରେ ସବୁ ଦେଖୁଛନ୍ତି, ମୁଁ ବା ଅଧିକ କ'ଣ କହିବି ? ସବୁ କଥା ମୁହଁ ଖୋଲି କହିଦେଲେ ଚୂଲୀ ଚାଳ ରହିବ ତ ? ଗାନ୍ଧିଜୀ ସିନା ନକଲ କରିବାକୁ ପାପ ବୋଲି ଭାବୁଥିଲେ- କିନ୍ତୁ, ଆଜିର ଛାତ୍ରସମାଜ ଏହାକୁ ପୁଣ୍ୟ ଭାବରେ ଗ୍ରହଣ କରି ନେଉଛନ୍ତି । ତାକୁ ପୁଣି ପିତାମାତା କିମ୍ବା ଅନ୍ୟ ଗୁରୁଜନମାନେ ଆଖିବୁଜି ସମର୍ଥନ ଜଣାଉଛନ୍ତି ।

ଏହି ଅପସଂସ୍କୃତି ପାଇଁ କ'ଣ ଛାତ୍ରମାନେ ଷୋଳଣା ଦାୟୀ ? ଶିକ୍ଷକମାନଙ୍କର କ'ଣ ଏଥିରେ କିଛି ଦୋଷ ନାହିଁ ? ସେମାନେ କ'ଣ ଗୋଟି ପଣ ତୁଳସୀ ? ଟଙ୍କାର ଅନ୍ୟ ପାଖକୁ ଟିକେ ଦେଖନ୍ତୁ -ଗୁରୁଙ୍କର ନୀତି ଆଦର୍ଶକୁ ଟିକେ କଷଟି ପଥରରେ ପରଖି ନେବା ଆସନ୍ତୁ ।

ସମୟ ଥିଲା ଯେତେବେଳେ ବିଦ୍ୟାଦାନକୁ ଏକ ମହତ ଦାନ ଭାବରେ ଗ୍ରହଣ କରାଯାଉଥିଲା । କିନ୍ତୁ, ବିଦ୍ୟାଦାନ ମହାପୁଣ୍ୟ ବାଣୀଟି ସ୍ୱାଧୀନ ଭାରତରେ ତା'ର ମୂଲ୍ୟବୋଧ ହରାଇ ବସିଲା । ପାଠ ପଢ଼ା ନାଆଁରେ ଆଳୁ ବାଇଗଣ ବେପାର ପରି ଟିଉସନ ବେପାର ଆଜିକାଲି ବେଶ୍ ଭଲ ଚାଲୁଛି । ଏକ ସଂକ୍ରାମକ ରୋଗ ପରି ଏହା ଆଜି ସର୍ବତ୍ର ବ୍ୟାପିବାରେ ଲାଗିଛି । ଆଜିକାଲି ଶିକ୍ଷାନୁଷ୍ଠାନଗୁଡ଼ିକ ଛାତ୍ରମାନଙ୍କ ପାଇଁ ଉପସ୍ଥାନ ପକାଇବା ସ୍ଥଳୀ ବା ମଉଜମଜଲିସ୍ ଆଳୟରେ ପରିଣତ ହୋଇଛି ।

ଶିକ୍ଷାନୁଷ୍ଠାନରେ ପଢ଼ାଯାଉଥିବା ପାଠଗୁଡ଼ିକ ବହୁ ପୂର୍ବରୁ ଟିଉସନରେ ପଢ଼େଇ ଦିଆଯାଉଛି । ଫଳରେ ସ୍କୁଲକଲେଜରେ ଛାତ୍ରମାନଙ୍କର ଆଉ ବା କାହିଁକି ପଢ଼ିବାକୁ ଆଗ୍ରହ ଆସିବ କହିଲେ ? ତଥାକଥିତ ଛାତ୍ରମାନଙ୍କର ନୀତି ହେଲା-ଡର କାହାକୁ ଭୟ କାହାକୁ, ଟିଉସନ ସାର ଅଛନ୍ତି ରକ୍ଷା କରିବାକୁ । ଟିଉସନରେ ଯଦି କେବଳ ଶିକ୍ଷା ଦାନ କରାଯାଉଥାଆନ୍ତା-ମୋର ସେଥିରେ କିଛି କହିବାର ନଥିଲା । କିନ୍ତୁ, ଟିଉସନକୁ ଏକ ଲାଭଜନକ ବ୍ୟବସାୟ ଭାବେ ଆପଣେଇ ନେଇଥିବା ଓ ନିଜକୁ ଆଦର୍ଶ ଶିକ୍ଷକ ବୋଲି ଭାବୁଥିବା ମହାତ୍ମାମାନେ ପରୀକ୍ଷାରେ ପାଶ କରେଇ ଦେବାର ପ୍ରତିଶୃତି, ପରୀକ୍ଷା ପୂର୍ବରୁ ପ୍ରଶ୍ନପତ୍ରର ସୂଚନା ସହିତ, ପରୀକ୍ଷା ଗୃହରେ କପି ଯୋଗାଇବା ଓ କପି ହେଉଥିବା ଦେଖି ମଧ୍ୟ ନୀରବ ରହିବା ଆଦି ନାନା ଅନୈତିକ କାର୍ଯ୍ୟ କରିବାକୁ କୁଣ୍ଠା ପ୍ରକାଶ କରନ୍ତି ନାହିଁ । ତା ସହିତ ଏହି ଶ୍ରେଣୀର ଆଦର୍ଶବାଦୀ ଗୁରୁମାନେ ନିଜର ଦାୟିତ୍ୱ ଓ କର୍ତ୍ତବ୍ୟରେ ମଧ୍ୟ ଅବହେଳା ପ୍ରଦର୍ଶନ କରୁଥିବା ଦେଖାଯାଏ । ଏହି ଶ୍ରେଣୀର ଗୁରୁମାନଙ୍କର ମୁଖ୍ୟ ନୀତି ହେଲା-

ବିଦ୍ୟା ଦାନ କରନା ମାଗଣା<br>
ଅର୍ଥ ଉପାର୍ଜନ ବୃତ୍ତିରେ ସେ ଗଣା ।<br>
ବିଦ୍ୟାକୁ କରିଲେ ବେଉସା<br>
ଜୀବନେ ଆସେନା ନିରାଶା ॥

ଏପରି ଆଚରଣ ପ୍ରଦର୍ଶନ କରୁଥିବା ଶିକ୍ଷକଙ୍କ ବିରୁଦ୍ଧରେ ଉପରିସ୍ଥ କର୍ମକର୍ତ୍ତାମାନେ କିଛି କରି ପାରନ୍ତି ନାହିଁ । କାରଣ ପଇସା ବଳରେ ଏମାନେ ସମସ୍ତଙ୍କୁ ଆଗରୁ କିଣି ନେଇଥାନ୍ତି । ଅନ୍ୟମାନେ ମଧ୍ୟ ଏହାର ପ୍ରତିରୋଧ କିମ୍ବା ବିରୋଧ କରିପାରନ୍ତି ନାହିଁ । ଏପରି ପରମ୍ପରାବିହୀନ ସୁବିଧା ସୁଯୋଗରୁ ବଞ୍ଚିତ ଅନ୍ୟ ଛାତ୍ରମାନେ କ୍ରମେ ହିଂସ୍ର ଓ ଚାରିଦଉଡ଼ିକଟା ହେବାକୁ ବାଧ ହୁଅନ୍ତି । ଆଜିର ଛାତ୍ର କେତେ ମାତ୍ରାରେ ଉଚ୍ଛୃଙ୍ଖଳ, ହିଂସ୍ର ଓ ଚାରିଦଉଡ଼ିକଟା ତାହା ପ୍ରତିଦିନ ଖବରକାଗଜ ପୃଷ୍ଠାରୁ ଆମେ ଜାଣିବାକୁ ପାଇବା ।

ପିତାମାତାମାନେ ମଧ୍ୟ ପରୋକ୍ଷ ଭାବରେ ଏଥିପାଇଁ ଦାୟୀ । ପୂର୍ବେ ଶିକ୍ଷକମାନେ ନାନାପ୍ରକାର ଦଣ୍ଡବିଧାନ କରି ଛାତ୍ରର ଚରିତ୍ର ସଂଶୋଧନ କରୁଥିଲେ । କିନ୍ତୁ, ଆଜି ଦଣ୍ଡ ଦେବାର ଅଧିକାର ଶିକ୍ଷକର ନାହିଁ । ଯଦି କୌଣସି ଶିକ୍ଷକ ଛାତ୍ରଟିର ଦୋଷତ୍ରୁଟି ସଜାଡ଼ିବା ପାଇଁ ତାକୁ ଚାପୁଡ଼ାଟିଏ ମାରୁଛନ୍ତି, ତେବେ ତା' ପର ଦିନ ବାପମାଆ ଆସି ଶିକ୍ଷକଙ୍କର ଚଉଦପୁରୁଷ ଉଦ୍ଧାର କରୁଛନ୍ତି । ତା' ସହିତ ନାନାପ୍ରକାର ଧମକ ଚମକ-ମାଡ଼, ବଦଳି ଆଦି କେତେ କ'ଣ ଭୟ ଦେଖାଯିବାର ନଜିର ରହିଛି । ବିଚରା ନିରୀହ ଶିକ୍ଷକଟି ଏ କ୍ଷେତ୍ରରେ ଭାବନ୍ତି କାଦୁଅକୁ ପଶିବି କାହିଁକି ନା-ଗୋଡ଼ ଧୋଇବି କାହିଁକି? ଛାତ୍ରଟି ମଣିଷ ହେଲେ କେତେ ନ ହେଲେ କେତେ ! ଏହି ସବୁ

ପାରିପାର୍ଶ୍ୱିକ କାରଣରୁ ଛାତ୍ରଟି କ୍ରମେ ଶିକ୍ଷକଙ୍କ ଠାରୁ ଦୂରେଇ ଯାଉଛି । ଶ୍ରେଣୀ ଗୃହରୁ ବାହାରି ଆସିଲେ, ସେ ନିଜ ହାତରେ ନିଜେ ଚଉଦ ପା । ଶିକ୍ଷକଙ୍କୁ ଦେଖିଲେ ମଧ୍ୟ ତା' ମନରେ ଭୟ ସୃଷ୍ଟି ହେଉନାହିଁ । ଫଳରେ ନାନା ଅନୈତିକ କାର୍ଯ୍ୟ ସେ ସ୍ୱଚ୍ଛନ୍ଦରେ କରିପାରୁଛି । ଏଟିଏମ୍ ଭଙ୍ଗା ଠାରୁ ଆରମ୍ଭ କରି ନକଲି ନୋଟ କାରବାରରେ ଲିପ୍ତତ ଆଉ କେଉଁଠି ଚୋରି କରୁଛି ବା କେଉଁଠି ଗୁଣ୍ଡାଗିରି କରି ସମସ୍ତଙ୍କ ମନରେ ଭୟ ସଞ୍ଚାର କରୁଛି । ଛାତ୍ରମାନଙ୍କର ଏହି ଚାରିଦଉଡ଼ିକଟା ଗୁଣ ପାଇଁ ଶିକ୍ଷକମାନେ ତାଙ୍କୁ ପ୍ରତିରୋଧ କରିବାକୁ ଭୟ କରୁଛନ୍ତି । ପିତାମାତା ମଧ୍ୟ ସାହସ କରି ଆକଟ କରି ପାରୁନାହାଁନ୍ତି । କାଳେ ପୁଅ ଘର ଛାଡି ଚାଲିଯିବ, ଏହି ଭୟ ସେମାନଙ୍କ ମନକୁ ସବୁବେଳେ ଆକ୍ରାନ୍ତ କରୁଛି । ଫଳରେ ଛାତ୍ରଟି ଅଧିକରୁ ଅଧିକ ଅମାନୁଷିକ ଓ ଅମାନବିକ ହୋଇ ପଡୁଛି ସିନା ନିଜକୁ ବଦଳେଇ ପାରୁନାହିଁ ।

ପୂର୍ବେ ଜ୍ଞାନୀ ଗୁଣୀ ବ୍ୟକ୍ତିମାନେ ଭୟରେ ମୂର୍ଖ ରାଜାଙ୍କର ସ୍ତୁତି ଗାନ କରୁଥିଲେ- ପୂଜା କରୁଥିଲେ । ସଂପ୍ରତି ଶିକ୍ଷକମାନଙ୍କର ମୂର୍ଖ ଛାତ୍ରଙ୍କୁ ଭୟ କରିବା ପୂଜା ନୁହେଁ ତ ଆଉ କ'ଣ ? ତାହା ଆପଣମାନେ ବିଚାର କରନ୍ତୁ । ଏହି ଅପସଂସ୍କୃତିର ଧାରା କ୍ରମେ ବଢ଼ିବଢ଼ି ଚାଲିଛି । ଏଣୁ, ଏବେଠୁ ସାଧୁ ସାବଧାନ ।

ବିଦ୍ୟା ଅଟଇ ମହାଧନ — ବାଲକେ କର ଉପାର୍ଜନ ।

x x x x

ବିଦ୍ୟା ଅଟଇ ମହାରତ୍ନ — ହୃଦୟେ ଘେନ କରି ଯତ୍ନ ।

କିମ୍ବା

ବିଦ୍ୟା ଅଟଇ ମହାବଳ — ସେ ବଳେ ଜିଣ ଭୂମଣ୍ଡଳ ।

ଆଦି ନୀତିବାଣୀଗୁଡ଼ିକର ମୂଲ୍ୟ ଯଦି ଆମେ ଅନୁଭବ ନ କରିବା, ତେବେ ଆଗାମୀ ଦିନରେ ଅବସ୍ଥା କ'ଣ ହେବ ତାହା ଭଗବାନଙ୍କୁ ହିଁ ଜଣା । କଥାରେ ଅଛି- "ବୁଡ଼ିଗଲା ଲୋକର ଗୋଡ଼ ତଳକୁ ତଳକୁ ।"

ତେଣୁ, ସୁଜ୍ଞ ଜନେ ଯାହା ଦେଖିଲି କହିଲି-ଯାହା ଅନୁଭବ କଲି ତାହାବି କହିଲି- ଭଲମନ୍ଦର ବିଚାର ଆପଣମାନଙ୍କ ହାତରେ । ଏବେଠୁ ଉପାୟ ଚିନ୍ତା କରି କାର୍ଯ୍ୟ ପନ୍ଥା ଗ୍ରହଣ କର । ନଚେତ୍ ନେଡ଼ି ଗୁଡ଼ କହୁଣୀକୁ ବୋହିଗଲେ ଆଉ ଉପାୟ ନଥିବ । ସେଥିପାଇଁ ପରା କୁହା ଯାଇଛି-

ପାଣି ରହୁ, ବନ୍ଧ ବାନ୍ଧରେ କୁମର
ପୁରି ରହୁ ସରୋବର ,
ପାଣି ଶୁଖିଗଲେ, ତୋ ହଂସା ଉଡ଼ିବ
ପିଣ୍ଡ ହେବ ନାରଖାର ।।



# ସର୍ପରେ ଜାତ କଲୁ ମୋତେ

ସାପଟାକୁ ଯେତେ କ୍ଷୀର ପିଆନ୍ତୁ, ସେ ବିଷ ବାନ୍ତି କରିବ ହିଁ କରିବ । ବିଷ ବାନ୍ତି କରିବା ତା'ର ପ୍ରକୃତି । ଏହି ପ୍ରକୃତିକୁ ଆପଣ ସ୍ୱଭାବ ବା ସାଧାରଣ ଧର୍ମ ଯାହା କିଛି ବି କହି ପାରନ୍ତି । ଏ କଥା ମୁଁ ଲେଖକ ଭାବରେ କହୁଛି ବୋଲି ଆପଣ ଜମା ଭାବନ୍ତୁ ନାହିଁ । ଆଗକୁ ବଢ଼ି କହିବାକୁ ମୁଁ ବା କିଏ ? ଏମିତି ମୁଁ ଆଉ କେଉଁ ଗାଈର ଗୋବର ଯେ! ବଢ଼ାଣିଆ କରି କହୁନାହିଁ ସାଧୁଜନେ । ଏ ସବୁ ବଡ଼ବଡ଼ିଆଙ୍କ କଥା । ପୁରାଣ ଭାଗବତ କଥା । ସାଧୁ ମହାପୁରୁଷଙ୍କ କଥା ।

ଅତିବଡ଼ୀ ଜଗନ୍ନାଥ ଦାସଙ୍କ ଶ୍ରୀମଦ୍ ଭାଗବତ ଆପଣଙ୍କ ଆଖିରେ ପଡ଼ିଥିବ । ଦଶମ ସ୍କନ୍ଧର ସତର ଅଧ୍ୟାୟ ନିଶ୍ଚୟ ଆପଣ ପଢ଼ିଥିବେ । ଶ୍ରୀକୃଷ୍ଣଙ୍କ କାଳୀୟଦଳନ କାହାଣୀଟି ବି ମନେ ପଡୁଥିବ । କେତେ ଜଣଙ୍କର ମନେ ନ ପଡ଼ିବା ସ୍ୱାଭାବିକ କଥା । କାରଣ ସେଗୁଡ଼ାକ ପୁରାଣ କଥା-ପୁରୁଣା କଥା । ଏବେ କେଉଁ ଭାଗବତ ଟୁଙ୍ଗି ଅଛି ନା ଭାଗବତ ପଢ଼ା ହେଉଛି ଯେ ସେ ସବୁ କଥା ଆପଣଙ୍କର ମନେ ପଡ଼ିବ ।

ଆଚ୍ଛା ଯଦି ମନେ ପଡୁନାହିଁ, ତେବେ ମୁଁ ମନେ ପକାଇ ଦେଉଛି । ହେଲା ଆପଣ ଭାଗବତ ପଢ଼ି ନାହାନ୍ତି-ତେବେ ରବିବାରିଆ ଦୂରଦର୍ଶନରେ ପ୍ରସାରିତ ହେଉଥିବା ମହାଭାରତ ନିଶ୍ଚୟ ଦେଖିଥିବେ । ସେଥିରେ ଶ୍ରୀକୃଷ୍ଣଙ୍କର ବାଲ୍ୟଲୀଳା ପ୍ରସାରିତ ହୋଇଯାଇଛି । ଶ୍ରୀକୃଷ୍ଣଙ୍କର କାଳୀୟଦଳନ କାହାଣୀଟି ସଂପୂର୍ଣ୍ଣ ନହେଲେ ବି କିଛି କିଛି ତ ଆପଣଙ୍କ ଆଖି ଆଗରେ ଭାସି ଉଠୁଥିବ । କାହାଣୀଟି ହେଉଛି-"ଶ୍ରୀକୃଷ୍ଣ ଆପଣାର ବନ୍ଧୁଙ୍କୁ ରକ୍ଷା କରିବାକୁ କାଳିନ୍ଦୀ ହ୍ରଦରେ ପ୍ରବେଶ କରିଛନ୍ତି । କାଳିନ୍ଦୀ ହ୍ରଦରେ କାଳୀୟ ନାଗତ ପୂର୍ବରୁ ଘର କରି ରହିଥାଏ-ଭଗବାନ ଶ୍ରୀକୃଷ୍ଣଙ୍କୁ ସେ ବା କେମିତି ଚିହ୍ନିବ ?-ନିଜ ସ୍ୱଭାବର ବଶବର୍ତ୍ତୀ ହୋଇ ସେ ତାଙ୍କୁ ଚୋଟ ପରେ ଚୋଟ ମାରିଛି-ନିଜର ଶରୀରକୁ ଶ୍ରୀକୃଷ୍ଣଙ୍କ ଦେହରେ ଗୁଡ଼ାଇ ଧରିଛି-କିନ୍ତୁ, ହେଲା କ'ଣ? ଶ୍ରୀକୃଷ୍ଣ ମାୟା ବଳରେ ନିଜ ଶରୀରକୁ ଏପରି ବୃଦ୍ଧି କରିଛନ୍ତି ଯେ କାଳୀୟ ତାଙ୍କୁ ଛାଡ଼ି ଦେବାକୁ ବାଧ ହୋଇଛି । ତାପରେ ଶ୍ରୀକୃଷ୍ଣ କାଳୀୟର ଫଣା ଉପରେ ଛିଡ଼ାହୋଇ ତାଙ୍କୁ ଚାପି ଧରିଛନ୍ତି - ସାମାନ୍ୟ ସାପ, ସେ ବା କେଉଁଠୁ ଭଗବାନଙ୍କର ଭାର ସହି ପାରୁଛି ? ନାଗରମଣୀମାନଙ୍କ ପ୍ରାର୍ଥନାରେ

ସନ୍ତୁଷ୍ଟ ହୋଇ ଶେଷରେ ଶ୍ରୀକୃଷ୍ଣ ନିଜର ଭାର ଲାଘବ କରିଛନ୍ତି । କାଳୀୟ ଭଗବାନ ଶ୍ରୀକୃଷ୍ଣଙ୍କୁ ଚିହ୍ନି ପାରି କ୍ଷମା ପ୍ରାର୍ଥନା କରି କହିଛି -

"ସର୍ପରେ ଜାତ କଲୁ ମୋତେ ସ୍ୱଭାବ ଛାଡ଼ିବି କେମନ୍ତେ ।"

କାଳୀୟ ସିନା ନାଗ ସାପଟିଏ-ସେ ତାର ସ୍ୱଭାବ ଛାଡ଼ି ପାରିନାହିଁ । କିନ୍ତୁ, ଆମେତ ମଣିଷ । ପାଠ ଶାଠ ପଢ଼ିଛେ-କେତେ କଥା ଜାଣିଛେ-ଆମର ବୁଦ୍ଧି ଅଛି, ବିଚାର ଶକ୍ତି ଅଛି-ତେବେ, ଆମର ସ୍ୱଭାବ କ'ଣ ଆମେ ଛାଡ଼ି ପାରୁଛେ ? କଥାରେ ଅଛି ପରା -

"ଘୁଷୁରି ପ୍ରକୃତି ପଙ୍କେ ଲୋଟେ । ମଣିଷ ପ୍ରକୃତି ମଲେ ତୁଟେ ।"

କଥାଟି ସତ ବା ମିଛ ଆସନ୍ତୁ ପରୀକ୍ଷା କରି ଦେଖିବା ।

ବଡବଡିଆ ମାନେ କହିଛନ୍ତି -'କହି ଜାଣିଲେ କଥା ସୁନ୍ଦର' । କଥାଟି ଜମା ମିଛ ନୁହେଁ । କହି ଜାଣିଥିବା ଲୋକଟି ସାଧାରଣ କଥାଟିକୁ ଏମିତି ରସରସିଆ ଓ ବନେଇଚୁନେଇ କରି କହି ବସେ ଯେ-ଶୁଣିବାକୁ ଇଚ୍ଛା ନଥିବା ଲୋକେ ଘଡ଼ିଏ ବି ଅଟକି ଯାଆନ୍ତି । ଅଳପ ଅଳପ ଇଚ୍ଛା କରୁଥିବା ଲୋକେ ଆବାକାବା ହୋଇ ଚାହିଁ ରହନ୍ତି-ଆଉ ଶୁଣିବାକୁ ଟାକି ବସିଥିବା ଲୋକେ ବାହାବା କହି ଖୁସିରେ ନାଚି ଉଠନ୍ତି ।

କିନ୍ତୁ, ଯାହାକୁ ଜମା କଥା କହି ଆସେ ନାହିଁ-ତା ମଗଜରେ ଯେତେ ବୁଦ୍ଧି ବା ଜ୍ଞାନ ଥାଉ-ସେ ଯେତେ ଚାଲାକ ଆଉ ଚତୁର ହୋଇଥାଉ-କଥାଟିକୁ ଜମା ସଜାଡ଼ି ସୁକୁଡ଼ି କହି ପାରିବ ନାହିଁ- ତେଣୁ, ତା କଥା ବା କିଏ କାହିଁକି ଶୁଣିବ ? ଏଇଥିରୁ ବୁଝନ୍ତୁ ସ୍ୱଭାବ ଓ ପ୍ରକୃତିର କଥା-ଏଥିରେ ଆପଣ ମୋ ସହିତ ଏକମତ କି ନୁହେଁ ନିଜେ ବିଚାର କରନ୍ତୁ ।

ଇଏ ହେଲା କଳିକାଳ । ମିଛ, ହିଂସା, ଶଠତା ଓ ଅଧର୍ମର ଭୂତ ଆଜି ସବୁ ମଣିଷଙ୍କ କାନ୍ଧରେ ସବାର ହୋଇଛି । ପରଧନ ଓ ବିନା ପରିଶ୍ରମରେ ରାତାରାତି କୋଟିପତି ହେବାର ନିଶା ସମସ୍ତଙ୍କୁ ଘାରିଛି । ରାତିକେ କିପରି ହାତୀଏ ଆଣିବେ ସେଇ ନିଶାରେ ଆଜି ସମସ୍ତେ ପାଗଳ । ସିଏ ବେପାରୀ ହୁଅନ୍ତୁ ବା ଚାକିରୀଆ-କୃଷକ ଅବା ଶ୍ରମିକ । କେହି ଏଥିରୁ ବାଦ ପଡ଼ନ୍ତି ନାହିଁ । ଆଗରୁ ଗୋଟିଏ କଥା ଥିଲା 'ଅଭାବେ ସ୍ୱଭାବ ନଷ୍ଟ' । କିନ୍ତୁ , ଆଜି କି ଭାବ କି ଅଭାବ-ସମସ୍ତେ ନିଜନିଜର ସ୍ୱଭାବକୁ ନଷ୍ଟ କରିବାକୁ କୁଣ୍ଠିତ ହେଉ ନାହାନ୍ତି । ସମସ୍ତେ ଭୁଲି ଯାଉଛନ୍ତି ଯେ -

'ଅଧର୍ମ ବିତ୍ତ ବଢ଼େ ବହୁତ ଗଲା ବେଳେ ଯାଏ ମୂଳ ସହିତ ।"

ତେବେ ଆସନ୍ତୁ ସବୁ ଶ୍ରେଣୀର ଲୋକେ କିପରି ନିଜ ନିଜର ସ୍ୱଭାବ ନଷ୍ଟ କରୁଛନ୍ତି, ତାହା ଟିକେ ପରୀକ୍ଷା କରିବା । ପ୍ରଥମେ ଦେଖନ୍ତୁ ଅସାଧୁ ବ୍ୟବସାୟୀମାନଙ୍କୁ ।

ସେମାନଙ୍କର ତ କୁଳ ନୀତି ହେଲା ବଣିଜ କରି ଦି' ପଇସା ରୋଜଗାର କରି ପରିବାର ଚଳାଇବା । ଅର୍ଥାତ୍, 'ବାଣିଜ୍ୟେ ବସତେ ଲକ୍ଷ୍ମୀ' ନୀତି ବାକ୍ୟଟିକୁ ସଫଳ କରିବା । କିପରି ଟଙ୍କାକ ଦି ଟଙ୍କା ହେବ-ସେଥିପାଇଁ ବେପାରୀ ପୁଅକୁ ଦିନରେ ଭୋକଶୋଷ ନାହିଁ କି ରାତିରେ ନିଦ ନାହିଁ । ହେଲା ବାବା, ବେପାର କରୁଛ ଯେତେବେଳେ ଲାଭ ନିଅ-ଟଙ୍କାରେ ଦଶ ପଇସା ନିଅ-ଯଦି ନ ପୋଷୋଉଛି ତେବେ ଆଉ ଦଶ ପଇସା ନିଅ-ଆମେ ତ ଲାଭ ଦେବାକୁ ନାହିଁ କରୁନାହୁଁ-ସମସ୍ତଙ୍କର ତ ପେଟପାଟଣା ଅଛି-ପିଲା ଛୁଆ ଓ ଘର ସଂସାର ଅଛି-ପେଟ ଚାଖଣ୍ଡକ ପାଇଁ ପରା ସବୁ ନାଟ । କିନ୍ତୁ ଦଶ କି କୋଡ଼ିଏ ପଇସା ବଦଳରେ ଯେଉଁ ଆଠଣା କି ବାରଣା ଲାଭ ନେବାକୁ ଅଡ଼ି ବସୁଛ, ତାକୁ କ'ଣ ଧର୍ମ ସହିବ? ଖାଲିତ ମୁନାଫା ନୁହେଁ, ତା ସାଙ୍ଗକୁ ପୁଣି ଅପମିଶ୍ରଣ । ଧାନରେ ଅଗାରି, ଚିନିରେ ସୁଜି, ଚାଉଳରେ ଗୋଡ଼ି, ଘିଅରେ ମୋବିଲ୍, ପେଟ୍ରୋଲରେ କିରୋସିନି, ଅଟାରେ ଚୋକଡ଼-ଏମିତି କେତେ ଜିନିଷରେ କେତେ କ'ଣ ? ଏମିତିକି ଔଷଧ ଓ ପୋକମରା ବିଷ ମଧ୍ୟ ଅପମିଶ୍ରଣ । ଯାହାକୁ ଖାଇ କୀଟପତଙ୍ଗ ମରୁନାହାନ୍ତି କି ମଣିଷଙ୍କର ରୋଗ ମଧ୍ୟ ଭଲ ହେଉ ନାହିଁ । ଲାଭ ଅପମିଶ୍ରଣ ସାଙ୍ଗକୁ କଳାବଜାର ଧନ୍ଦାବି ଆଜି ବଢ଼ି ବଢ଼ି ଚାଲିଛି । ବଜାରରେ ଅତ୍ୟାବଶ୍ୟକ ପଦାର୍ଥର କିପରି କୃତ୍ରିମ ଅଭାବ ସୃଷ୍ଟି ହେଉଛି, ତା ଆମେ ସମସ୍ତେ ଦେଖୁଛେ । କିନ୍ତୁ, ହେଉଛି କ'ଣ ? ପଇସା ଫୋପାଡ଼ି ଦେଲେ ସମସ୍ତଙ୍କ ମୁହଁ ବନ୍ଦ । ପାଟି ଖୋଲିବ କିଏ ? ସାହସ ଅଛି କାହାର ?

ଇଏତ ଗଲା ବ୍ୟବସାୟୀଙ୍କ କଥା-ଏବେ ଚାକିରୀଆଙ୍କ ଆଡ଼କୁ ଆସନ୍ତୁ ଟିକେ ନଜର ପକାଇବା । ଆଗେ ଗୋଟିଏ କଥା ଥିଲା "ଚାକିରି କରିବ ପୁଲିସି, ମାଛ ଖାଇବ ଇଲିଶି ।" ଏବେ କିନ୍ତୁ ସେ କଥା ବଦଳାଇ କୁହା ଗଲାଣି -"ଯେବେ ନଥିବ କିଛି ଉପୁରି, ତେବେ କାହିଁକି କରିବ ଚାକିରି ?" କ'ଣ ମିଛ କହୁଛି ? ଆପଣମାନେ ନିଜେ ଅନୁଭବ କରୁଥିବେ । ଆଖି ଆଗରେ ବି ଦେଖୁଥିବେ-ଯେଉଁ ଚାକିରୀଆଙ୍କର ଉପୁରି ଦି ପଇସା ରୋଜଗାର ଅଛି-ତାଙ୍କର କୋଠା ଉପରେ କୋଠା-ଘରେ ସବୁ ପ୍ରକାର ବିଳାସ ସାମଗ୍ରୀ ଖୁନ୍ଦାଖୁନ୍ଦି-ତାଙ୍କ ସ୍ତ୍ରୀ ଦିନକୁ ଦଶଥର ଶାଢ଼ୀ ଆଉ ପିଲାମାନେ ପୋଷାକ ବଦଳାଉଛନ୍ତି-ଏହି ଖବର ପ୍ରତିଦିନ ଖବର କାଗଜରେ ପ୍ରକାଶ ପାଉଛି-ଆପଣ କଣ ପଢୁନାହାନ୍ତି? କା' ଘରୁ କୋଟିଏରୁ ଉର୍ଦ୍ଧ୍ୱ ଟଙ୍କାର ସମ୍ପତ୍ତି ଜବତ କରା ଗଲାଣି ତ କେଉଁଠି ରାତି ଜଗୁଆଳି କୋଟିଏ ଟଙ୍କାର ମାଲିକ ହୋଇ ଧରାହେଲାଣି-ଏ ସବୁ ଘଟୁଛି କେମିତି? ତାହା ଆପଣ ଅନୁମାନ କରନ୍ତୁ । ସବୁ ଟଙ୍କାର ମାୟା । ଆଉ ଯା'ର ଉପୁରି ନାହିଁ, ତାଙ୍କ ଘରେ ଜିନିଷ ପତ୍ରତ ଦୂରର କଥା-ତାଙ୍କ ପିଲାଏ ଭଲରେ ଗଣ୍ଡିଏ ଖାଇବାକୁ କି ପିନ୍ଧିବାକୁ ପାଉନାହାନ୍ତି । ଏହି ଉପୁରି ପାଇବା ନିଶାଟା କେମିତି ସମସ୍ତଙ୍କୁ ଘାରିଛି ଦେଖିବା ଆସନ୍ତୁ ।

ଧରନ୍ତୁ ଆପଣଙ୍କର କୌଣସି ଅଫିସ୍‌ରେ କାମ ଅଛି-ଆଉ କିରାଣୀ ବାବୁଙ୍କୁ ଆପଣ କିଛି ପାଉଣା ଦେଇ ନାହାନ୍ତି-ତେବେ ଆପଣ ଦଉଡୁ ଥାଆନ୍ତୁ-ଦଉଡ଼ି ଦଉଡ଼ି ଚପଲ ପଛେ ଘୋରି ହୋଇଯିବ, କିନ୍ତୁ କାମ ଘର ଶୂନ । ସେଇଠି ଆଉ ଜଣେ ହାତଗୁଞ୍ଜା ଦେଇ ଆପଣଙ୍କ ଆଗରେ କାମ କରାଇ ନେବ-ଆପଣ ଖାଲି ମାରିନେଲେ ମହାପାତ୍ରେ ଚାହିଁଥିବ ଜକଳା ପରି କେବଳ ବଲବଲ କରି ଚାହିଁଥିବେ-କିଛି କହି ପାରିବେନି କି କରି ପାରିବେନି । ଖାଲି କ'ଣ କିରାଣୀ ? ପିଅନ ବାପୁଡ଼ାକୁ ଯଦି କିଛି ହାତଗୁଞ୍ଜା ନ ଦେବେ ତେବେ ଫାଇଲ ଏ ଟେବୁଲ୍‌ରୁ ସେ ଟେବୁଲ୍‌କୁ ଘୁଞ୍ଚିବନି । ଅଫିସର ମାନଙ୍କର ମଧ୍ୟ ସେମିତି ପଣି ବା ପରସେଣ୍ଟ ଅଛି । ଆଉ ଯେଉଁ ଚାକିରିରେ ଉପୁରି ନାହିଁ-ସେଠି ଖାଲି ସରକାରୀ ତହବିଲ୍ ଲୁଣ୍ଠନ ଚାଲିଛି । ସରକାରୀ ଗୋଦାମରୁ କିପରି ଚିନି, ଚାଉଳ, ସିମେଣ୍ଟ, ରଡ଼ ରାତାରାତି ଉଭାନ୍ ହୋଇ ଯାଉଛି ତାହାତ ଆମେ ସମସ୍ତେ ଜାଣୁ । ବ୍ୟାଙ୍କରୁ କେମିତି ନକଲି ଚେକ୍ ଓ ଡ୍ରାଫ୍‌ଟ ଜରିଆରେ ଲକ୍ଷ ଲକ୍ଷ ଟଙ୍କା ଆତ୍ମସାତ୍ କରାଯାଉଛି ତାହାତ ଖବରକାଗଜରୁ ପଢୁଥିବେ । ତେଣେ କଳକାରଖାନାର ମାଲିକ ନିଜ କର୍ମଚାରୀଙ୍କୁ ଯଦି ବୋନସ୍ କି incentive ନ ଦେଉଛନ୍ତି ତେବେ କାରଖାନାର ଉତ୍ପାଦନ ହ୍ରାସ ପାଇବାରେ ଲାଗୁଛି ।

ଏବେ ଆସନ୍ତୁ ଜନସାଧାରଣଙ୍କ କଥାକୁ ଦେଖିବା । ସମାଜର ଗରିବ ଲୋକମାନଙ୍କ ଆର୍ଥିକ ଉନ୍ନତି ପାଇଁ ସରକାରଙ୍କ ତରଫରୁ କେତେ ନୂଆ ନୂଆ ଯୋଜନା କାର୍ଯ୍ୟକାରୀ ହେଉଛି-କାରଣ ଲୋକେ ଭଲରେ ଚଳିବେ-ଦେଶରୁ ଦାରିଦ୍ର୍ୟ ଦୂର ହେବ । କିନ୍ତୁ, ହେଉଛି କ'ଣ? ସରକାରୀ ଅଫିସର ଗାଈଗୋରୁ ଛେଳି ମେଣ୍ଢା ନିଜେ ହିତାଧିକାରୀମାନଙ୍କୁ କିଣି ପ୍ରଦାନ କରିବାକୁ ନିୟମ କରିଛନ୍ତି- କିନ୍ତୁ ସେଇ ଗୋଟିଏ ଗାଈ ବା ଛେଳି କେତେଥର ବିକ୍ରି ହେଉଛି, ତାର ହିସାବ କ'ଣ କିଏ ରଖିଛି ? ଋଣ ମେଳା ହୋଇ ଗ୍ରାମ୍ୟ କାରିଗରମାନଙ୍କୁ କାରିଗରୀ ଉପକରଣ ଓ ଟଙ୍କା ବଣ୍ଟା ଯାଉଛି - କିନ୍ତୁ ଦେଖିଲା ବେଳକୁ ସେଇ ଜିନିଷ ସବୁ ବଜାରରେ ଅଧା ଦାମରେ ବିକ୍ରି ହେଉଛି । ଖାଲି କାଗଜପତ୍ରରେ ଦାରିଦ୍ର୍ୟ ଦୂରୀକରଣ କଥା କୁହାଯାଉଛି । ପ୍ରକୃତରେ ଦେଖିଲା ବେଳକୁ ଲୋକେ ଯେଉଁ ଗରିବକୁ ସେଇ ଗରିବ ।

କାହାକୁ କହିବା ଆଜ୍ଞା ! - କହିଲେ କୁଳ କୁଟୁମ୍ବଙ୍କୁ ଲାଜ । ନ କହିଲେ କୁଳ ଭାସି ଯାଉଛି । ନ କହି ମୁଁ କେଉଁଠି ଚୁପ୍ ହୋଇ ରହିପାରୁଛି । ଖାଲି ଗରିବ ଆଦିବାସୀ ହରିଜନ କାହିଁକି ? ଧୋବଧାଉଳିଆ ଶିକ୍ଷିତ ପାଠୁଆ ବାବୁମାନେ ବି ଏଥିରୁ ବାଦ ଯାଉନାହାନ୍ତି । ଆତ୍ମନିଯୁକ୍ତି ବା ବେକାରୀ ଦୂରୀକରଣ ପାଇଁ ଲକ୍ଷ ଲକ୍ଷ ଟଙ୍କା ଋଣ ଦିଆଯାଉଛି -ହେଲେ ହେଉଛି କ'ଣ ? ବାବୁମାନେ ପ୍ରଥମେ ଗୋଟିଏ ଲେଖା ଫଟ୍‌ଫଟିଆ କିଣି ମଉଜ ମଜଲିସ୍‌ରେ ମାତି ଯାଉଛନ୍ତି-ତେଣେ ନିର୍ମିତ କଳକାରଖାନା ଅଧାହୋଇ ପଡ଼ି ରହୁଛି ବା ରୁଗ୍‌ଣ ହୋଇ ବନ୍ଦ ହୋଇ ଯାଉଛି । ଅସାଧୁ କଣ୍ଟ୍ରାକଟର୍‌ମାନଙ୍କ

କଥାତ ନ କହିବା ଭଲ । ତାଙ୍କ ଦ୍ୱାରା ନିର୍ମିତ ରାସ୍ତାଘାଟ କୋଠାବାଡ଼ି ତ ଆପଣଙ୍କ ଆଖିରେ ପଡୁଥିବ । କେଉଁଠି କୋଠାବାଡ଼ି ବା ପୋଲ ଭୁଷୁଡ଼ି ପଡ଼ିଲାଣି ତ କେଉଁଠି ରାସ୍ତାରେ ଆଣ୍ଠୁଏ ଖାଲ ହୋଇ ଗଲାଣି । ମିଛ, ଭଣ୍ଡ ସାଧୁ ସନ୍ନ୍ୟାସୀମାନଙ୍କୁ ବି ତ ଆପଣ ଭେଟୁଥିବେ-କିମ୍ବା ତାଙ୍କ କୀର୍ତ୍ତିକଳାପ ସମ୍ପର୍କରେ ଖବର କାଗଜରୁ ପଢୁଥିବେ । କିଏ ପିଲାଚୋରୀ କଲାଣି ତ ଆଉ କିଏ ପର ନାରୀ ଅପହରଣ କଲାଣି । ଆଉ କିଏ ମିଛ ଆଶ୍ୱାସନା ଦେଇ ଧନସମ୍ପତ୍ତି ଧରି ରାତାରାତି ଚମ୍ପଟ ମାରିଲାଣି ।

ଦେଶର ଭବିଷ୍ୟତ ଛାତ୍ରସମାଜ କଥା ତ ନ କହିବା ଭଲ-ଏମାନେ ଏତେ ବିଶୃଙ୍ଖଳ ହେଲେଣି ଯେ ଢ଼ୋଲ ଭିତରେ ମୂଷା, ଛାତ୍ରଙ୍କ ଭିତରେ ଅଣଛାତ୍ରଙ୍କ କାର୍ଯ୍ୟକଳାପରେ ମଣିଷ ଅତିଷ୍ଠ ହୋଇ ପଡ଼ିଲାଣି । ସେମାନଙ୍କୁ ନଗା ନାହିଁ କି ପଘା ନାହିଁ-ଯେନ ତେନ ପ୍ରକାରେ ପାଶ୍ କରିବାର ନିଶା-ଯଦି କିଛି କହିଲ, ତେବେ କଥା ସଇଲା-ଗୁରୁ ସାକ୍ଷାତ୍ ପରମ ଈଶ୍ୱର ନୀତିବାଣୀଟି ଆଜି ପୁରାପୁରି ବଦଳି ଗଲାଣି । ଶିକ୍ଷକ ଓ ଅଧ୍ୟାପକମାନେ ''ଆଲୋ ସଖି ଆପଣା ମହତ ଆପେ ରଖି'' ନ୍ୟାୟରେ ନିଜ ମାନ ମହତକୁ ଜଗି ଚଳିବାକୁ ବାଧ ହେଲେଣି ।

ଆଉ ଧର୍ମଘଟ-ହରତାଳ-ଅନଶନ କଥା ତ ନ କହିବା ଭଲ । ଯେତେ ସୁବିଧା ସୁଯୋଗ ଦିଆଯାଉ ପଛକେ ଧମଘଟ ତା ବାଟରେ ଯେମିତି ଚାଲିବା କଥା ଚାଲିବ । ତାର ଯେମିତି ଶେଷ ନାହିଁ । ମୋଟାମୋଟି ସ୍ୱାର୍ଥ-କ୍ଷମତା ଓ ଅର୍ଥଲିପ୍ସା ସମସ୍ତଙ୍କ ମନକୁ ଏପରି ଆବୋରି ବସିଛି ଯେ କେହି ସେ ପ୍ରବୃତ୍ତିରୁ ମୁକୁଳି ପାରୁ ନାହାନ୍ତି । ମଣିଷଙ୍କୁ ଛାଡ଼ି କ'ଣ ଏ ସୃଷ୍ଟି ବଞ୍ଚିବ ? କିଛି ପାହାଡ଼-କିଛି ପର୍ବତ-କିଛି ନଦନଦୀ ଝରଣା ବା କିଛି ବୃକ୍ଷଲତା ପଶୁପକ୍ଷୀଙ୍କୁ ନେଇ କ'ଣ ଏ ବିଶ୍ୱ ଗର୍ବ କରିବ ? ଏ ବିଶ୍ୱ ଗର୍ବିତ କେବଳ ମଣିଷ ସମାଜକୁ ନେଇ । ଇଏ ହେଉଛି ବ୍ୟକ୍ତିର ବିଶ୍ୱ । ବ୍ୟକ୍ତିକୁ ନେଇ ସମାଜ- ସମାଜକୁ ନେଇ ଜାତି - ଜାତିକୁ ନେଇ ରାଷ୍ଟ୍ର-ଆଉ ରାଷ୍ଟ୍ରକୁ ନେଇ ଏ ବିରାଟ ବିଶ୍ୱର ପରିକଳ୍ପନା । ବ୍ୟକ୍ତିର ସ୍ୱଭାବ ପରିବର୍ତ୍ତନରେ ବିଶ୍ୱର ସ୍ୱଭାବ ବଦଳିବ । କିନ୍ତୁ କେବେ? ସେ ସମୟ ଆଉ କେତେ ବାକି ? ବିଳମ୍ବ ହେଲେ ମଧ୍ୟ ନିରାଶ ହେବାର ନୁହେଁ । ଭାଗବତରେ ସର୍ପ ସିନା ତାର ସ୍ୱଭାବ ଛାଡ଼ି ପାରି ନାହିଁ । କିନ୍ତୁ ମଣିଷ ନିଜ ସ୍ୱଭାବ ତ ଛାଡ଼ି ପାରିବ । କଥାରେ ଅଛି ପରା - "ପ୍ରକୃତିଃ ନୈବ ମୁଚ୍ୟତେ, ଯୈବ ମୁଚ୍ୟତେ ଶନୈଃ ଶନୈଃ ।'' ହୃଦୟରେ ମୋର ଆଶାର ଦୀପାଳି ଜଳୁଛି । ଝରକା ଦେଇ ମୁଁ ଚାହିଁ ରହିଛି ଦୂର ଦିଗ୍‌ବଳୟ ଆଡ଼େ, କେବଳ ଏକ ବିମୋହନ ମୁହୂର୍ତ୍ତର ପ୍ରତୀକ୍ଷାରେ । ଆପଣମାନେ ମଧ୍ୟ ସେଇ ସୁବର୍ଣ୍ଣ ସକାଳର ପ୍ରତୀକ୍ଷାରେ ରୁହନ୍ତୁ ।



# ଆପେ ମରି ସଙ୍ଗ ଲୋଡ଼ି

ଜନ୍ମ ଆଉ ମୃତ୍ୟୁ-ଏହି ଦୁଇ ବିନ୍ଦୁକୁ ସଂଯୋଗ କରୁଥିବା ସରଳରେଖାଟି ହେଉଛି ଜୀବନ । ଜୀବନ ହେଉଛି ଜୀବର ଚଲାବାଟ । ଶରୀରଟି ନୂଆ କିନ୍ତୁ ଆତ୍ମାଟି ପୁରୁଣା । ଜନ୍ମ ସମୟରେ ଆତ୍ମାଟି ନୂଆ ବେଶ ଧାରଣ କରେ-ମଲା ବେଳକୁ ଅଠାକାଠି ପିଞ୍ଜରା ଛାଡ଼ି, ସୁନାର ଶୁଆଟି କାହିଁ କେତେ ଦୂରକୁ ଉଡ଼ିଯାଏ । ବିଚିତ୍ର ଏ ଜୀବନ ।

ମଣିଷ ଏକା ଜନ୍ମ ହୁଏ-ଏକା ବି ମରେ । ତାର ଆସିବାଟା ଯେମିତି ଆକସ୍ମିକ -ଯିବାଟା ମଧ୍ୟ ସେମିତି ଆକସ୍ମିକ । କିନ୍ତୁ ସଂସାରର ତେଲଲୁଣ ହାଟ କଲାବେଳେ ମଣିଷ ଟିକିଏ ତାର ସମଶ୍ରେଣୀମାନଙ୍କ ସହିତ ମେଳ ବାନ୍ଧେ । ବନ୍ଧୁତା ଯୋଡ଼େ । ପୁଣି, ବେଳ ସରିଲେ ମେଳ ଭାଙ୍ଗେ । ଏ କଥା ଆମେ ସମସ୍ତେ ଭଲଭାବେ ଜାଣିଛୁ- ହୃଦୟଙ୍ଗମ ମଧ୍ୟ କରିଛୁ । ମୁଁ ବା ଆଉ ବଢ଼ାଇ ଚଢ଼ାଇ କ'ଣ ବଡ଼ାଇ କରି କହିବି ? କିନ୍ତୁ, ନ କହିଲେ ଚଳୁଛି କେଉଁଠି ?-ଆମ ଭିତରେ ଏମିତି କେତେକ ଜାଣିସିଆଣିଆ ମଣିଷ ଅଛନ୍ତି, ଯେଉଁମାନେ ଅଢ଼େଇ ଦିନ ପାଇଁ ରାବଣ ବଡ଼ାଇ କରନ୍ତି । କରାଣ୍ଡି ମାଛ ପରି ଫକ୍ ଫକ୍ ଡିଅଁନ୍ତି । ସେମାନେ ଭାବନ୍ତି, ଆମ ବେଳ ବିତିବନି କି ଆମ ଖେଳ ସରିବନି । ଆମେ ଅଜର ଅମର, ବ୍ରହ୍ମା-ବିଷ୍ଣୁ-ମହେଶ୍ୱର । ହର୍ତ୍ତା-କର୍ତ୍ତା-ଦଇବ ବିଧାତା-ସବୁକିଛି । ନିଜକୁ ଦ୍ୱିତୀୟ ବିଶ୍ୱର ସ୍ରଷ୍ଟା ବୋଲି ଭାବି ମନେ ମନେ ସୁଲଳିତ କଣ୍ଠରେ ସେମାନେ ଗାଆନ୍ତି -

''କରିଅଛି ପଣ ଆରେ ଦେବଗଣ
ତ୍ରିପୁରେ ରଖାଇ ଦେବି ନାହିଁ,
ସରିଗଲା ତୁମ ସ୍ୱର୍ଗ ଭୋଗ ଏବେ
ଅମୃତ ଚଖାଇ ଦେବି ନାହିଁ ।।''

ମାତ୍ର, ଏ କଥା ଭାବିଲାବେଳେ 'ମର୍ତ୍ତ୍ୟ ମଣ୍ଡଳେ ଦେହ ବହି, ଦେବତା ହୋଇଲେ ମରଇ' ନୀତିବାକ୍ୟଟି ତାଙ୍କର ସାରଦିଆ ମଗଜକୁ ଟିକିଏ ବି ଛୁଏଁ ନାହିଁ । ଦୁନିଆଟାକୁ ତାଡ଼ି-ମାଡ଼ି-ଓପାଡ଼ି ଫୋପାଡ଼ି ଦେବାକୁ ସେମାନେ ଆଗେଇ ଆସନ୍ତି । କଥା କଥାକେ

ଶିଙ୍ଗ ଦେଖାନ୍ତି । କାଳ ତାଙ୍କୁ ହସାଏ । ଅନୁତାପ ଅଶ୍ରୁରେ ସେ ହସକୁ ପଖାଳିବାକୁ ତାଙ୍କର ଆଉ ସମୟ ନଥାଏ । ନିଜକୁ ସୁଧାରିବାକୁ ଚାହିଁଲା ବେଳକୁ ନେଡ଼ିଗୁଡ଼ କହୁଣୀକୁ ବୋହି ଯାଇଥାଏ ।

ତାଙ୍କର ଘୁଣ ଧରା ମନ ଭିତରେ 'ମୁଁ' ଆଉ 'ମୋର' ଛଡ଼ା କିଛି ପଶେ ନାହିଁ । ନିଜେ ଓ ନିଜ ପରିବାରକୁ ବଞ୍ଚାଇବା ପାଇଁ ସେମାନେ ଝାଳନାଳ ହୋଇ ଯାଆନ୍ତି । ସମାଜର ଏକ ପରାଙ୍ଗପୁଷ୍ଟ ଉଦ୍ଭିଦ ପରି ସେମାନେ ନିଜର କାୟା ବିସ୍ତାର କରନ୍ତି । ଶାଗୁଣା ପରି ଅନ୍ୟର ମାଉଁସ ଖାଇବାକୁ ଭଲ ପାଆନ୍ତି । ଅନ୍ୟମାନଙ୍କ ପିଠି ଉପରେ ଛିଡ଼ା ହୋଇ ନିଜର ଉଚ୍ଚତା କଳନା କରନ୍ତି । ମାତ୍ର, ସେମାନେ ନିଜେ କ'ଣ ଏ ସବୁ କରନ୍ତି ? ତାଙ୍କର ଏ ସମସ୍ତ କାର୍ଯ୍ୟକଳାପ ପାଇଁ ଇନ୍ଦ୍ରିୟଗୁଡ଼ା ତାଙ୍କୁ ଇଞ୍ଜେକ୍ସନ ଦେଇ ଛଟପଟ କରାନ୍ତି - ମନ ତାଙ୍କୁ ଚାବୁକ୍ ମାରେ । ନିଜ ମନର ଗୋଟାଏ କାଳିସୀ ବନିଯାଇ ସେମାନେ ମନେ ମନେ ଭାବନ୍ତି-'ଦେଖଇ ନେତ୍ର ଯାହା ଚ଼ଉପାଶର, ସେ ସର୍ବର ଅଟଇ ମୁଁ ଅଧିଶ୍ୱର ।' ଆଉ ବେଳେବେଳେ ସେମାନେ ଆତ୍ମ ଗର୍ବରେ ବେଙ୍ଗ ପରି ଫୁଲି ଉଠି କୁହନ୍ତି -

''ମୁଁ କି ଏମିତି ସେମିତି ଜଣେ
ମୁଁ ତ ଗୋଟିଏ କାହାଣେ ପଣେ
ମୁଁ ଚାଲିଗଲା ବେଳେ, ଭୂଇଁ ଦୁଲୁକଇ
ଶିଆଳ ପଳାଏ ବଣେ ।''

ଏହି ଆତ୍ମ ବଡ଼ିମା, ଗର୍ବ ଓ ଅହଙ୍କାର ଭିତରେ ମଣିଷ ଭୁଲିଯାଏ ଯେ -

''ରହି ନାହିଁ କେହି ରହିବେ ନାହିଁ ଏ
ଭବରଙ୍ଗ ଭୂମି ତଳେ,
ସର୍ବେ ନିଜ ନିଜ ଅଭିନୟ ସାରି
ବାହୁଡ଼ିବେ କାଳ ବଳେ ।''

ବଞ୍ଚିବାର ଦୁର୍ବାର ଆଶା-ବଡ଼ ହେବାର ନିଶା ସହିତ ତେଲଲୁଣ ସଂସାରର ବୁଢ଼ୀଆଣୀ ଜାଲ ଭିତରେ ଛନ୍ଦି ହୋଇ ମଣିଷ, ଭଲମନ୍ଦ, ଭୁଲ୍-ଠିକ୍ର ବିଚାର ଭୁଲିଯାଏ । ଆଶା ଆକାଂକ୍ଷାର ଚକାଭଉଁରୀ ଖେଳ ଭିତରେ ବାଟବଣା ହୋଇ ସର୍ବଦା ଭୁଲ୍ ବାଟକୁ ଆଦରି ନିଏ । ବାମନ ହୋଇ ଚନ୍ଦ୍ରକୁ ହାତ ବଢ଼ାଏ-ଝୁମ୍ପୁଡ଼ିରେ ରହି ରାଜମହଲର ସ୍ୱପ୍ନ ଦେଖେ । ଲୋଭ-ସ୍ୱାର୍ଥ-ଲାଳସା ଆଦି ଇନ୍ଦ୍ରିୟଗତ ଗୁଣର ବଶବର୍ତ୍ତୀ ହୋଇ ଅନୀତି - ଅଧର୍ମ - ଅସତ୍ୟ ଆଡ଼କୁ ଟାଣି ହୋଇଯାଏ । ଆପଣାର ସ୍ୱାର୍ଥ ହାସଲ ପାଇଁ ଧପାବାଜି, ଜାଲିଆତି, ଲୁଆଚୋରୀ ଆଦି ଅପକର୍ମକୁ ଆପଣେଇ ନିଏ-ନିଜ ଚିନ୍ତାଧାରାକୁ ଅନ୍ୟ

ଉପରେ ଲଦି ଦେବାକୁ ବଳ ଓ କୌଶଳ ପ୍ରୟୋଗ କରେ-ନିଜ ସହିତ ଅନ୍ୟମାନଙ୍କୁ ମଧ୍ୟ ରସାତଳଗାମୀ କରାଇବାକୁ କୁଣ୍ଠା ପ୍ରକାଶ କରେ ନାହିଁ ।

ଦସ୍ୟୁ ରତ୍ନାକରର ସମସ୍ତ ପାପ ଓ ଅପକର୍ମର ଭାଗୀଦାର ହେବା ପାଇଁ ତାର ପିତାମାତା, ସ୍ତ୍ରୀ ଓ ସନ୍ତାନ ଅନିଚ୍ଛା ପ୍ରକାଶ କରିବାରୁ ସେ ସମସ୍ତ ଅପକର୍ମ ପରିତ୍ୟାଗ କରି ମହର୍ଷି ବାଲ୍ମୀକିରେ ପରିଣତ ହୋଇଛି । କିନ୍ତୁ, ଆଜିର ମଣିଷ ନିଜେ କରୁଥିବା ଅପକର୍ମକୁ ଅପକର୍ମ ଓ ଭୁଲ୍‌କୁ ଭୁଲ୍ ବୋଲି ଭାବୁ ନାହିଁ । ଭୋଗ ବିଳାସରେ ବୁଡ଼ି ରହି ଗୋଟିଏ ମିଛକୁ ଲୁଚାଇବାକୁ ଅନେକ ମିଛ-ଗୋଟିଏ ପାପକୁ ଘୋଡ଼ାଇବାକୁ ଅନେକ ପାପ କରୁଛି ସିନା, ତାହା ପରିତ୍ୟାଗ କରି ପାରୁନାହିଁ । ''ବୁଡ଼ିବତ ଏକା ଏକା କାହିଁକି ବୁଡ଼ିବ-ନିଜ ସହିତ ଅନ୍ୟମାନଙ୍କୁ ସାଙ୍ଗରେ ଧରି ବୁଡ଼ିବା ତା'ର ଏକ ପ୍ରକାର ନୀତିରେ ପରିଣତ ହୋଇଛି । ମଣିଷର ଏହି ସ୍ୱାର୍ଥପର ନୀତିର ଉଦାହରଣ ଦେଲେ ଗୋଟିଏ ପୁରାଣ ହେବ । କଥାରେ ଅଛି ପରା-''ଖଜୁରୀ ଗଛର କି ଗୁଣ ଗାଇବି, ସେ ତ ମୂଳରୁ ପାହାଚ ପାହାଚ ।''

ମଣିଷର ଏହି ସ୍ୱାର୍ଥପର ନୀତି ଆଲୋଚନା ପୂର୍ବରୁ ତକ୍ଷକ ସର୍ପର ସ୍ୱାର୍ଥପର ନୀତି ବିଷୟରେ ଟିକେ ଅବଗତ କରାଇ ଦେଉଛି-''ରାଜା ଜନ୍ମେଜୟ ସର୍ପକୁଳର ବିନାଶ ପାଇଁ ସର୍ପ ଯଜ୍ଞ କରୁଥାଆନ୍ତି । ଋଷିମାନେ ଯେଉଁ ସର୍ପର ନାଆଁ ଧରି ଆହୁତି ଦିଅନ୍ତି, ସେହି ସର୍ପଟି ଯଜ୍ଞ କୁଣ୍ଡରେ ପଡ଼ି ସ୍ୱାହା ହୋଇଯାଏ । ଏହି ଯଜ୍ଞ ଫଳରେ ଅନେକ ସାପଙ୍କର ବିନାଶ ଘଟିଲା । ଶେଷରେ ତକ୍ଷକର ପାଳି-ଋଷିମାନେ ଯେତେ ତକ୍ଷକାୟ ସ୍ୱାହା, ତକ୍ଷକାୟ ସ୍ୱାହା ଡାକିଲେ ବି ତକ୍ଷକ କି ଶୁଣେ ? ସେତ ଯାଇଁ ଇନ୍ଦ୍ରଙ୍କ ଦେହରେ ଗୁଡ଼ାଇ ହୋଇ ମନେମନେ ଭାବିଛି, ଇନ୍ଦ୍ର ତାକୁ ରକ୍ଷା କରିବେ । ଋଷିମାନେ ତ ତ୍ରିକାଳ ଦ୍ରଷ୍ଟା-ସେମାନେ ଏହା ଜାଣି ପାରି ବିଚାର କଲେ-ଇନ୍ଦ୍ର ଯଦି ତକ୍ଷକକୁ ଶରଣ ଦେଇଛନ୍ତି ତେବେ ଏକାଥରେ ଇନ୍ଦ୍ରାୟ ସ୍ୱାହା ଓ ତକ୍ଷକାୟ ସ୍ୱାହା ଡାକି ମନ୍ତ୍ର ଉଚ୍ଚାରଣ କରିବା-ତେଣିକି ଯାହା ହେବ ଦେଖିବା । ଆସ୍ତିକ ଋଷିଙ୍କ ଯୋଗୁ କାମଟା ଅଧାରେ ସିନା ଅଟକି ଗଲା, ନଚେତ୍ କି ଅନର୍ଥ ହୋଇ ନଥାନ୍ତା କହିଲେ ?

ଏହି ଅନ୍ୟ ପିଠିରେ ନାଉ ହେବା ନୀତି ଆଜିର ମଣିଷ ମନକୁ ଆବୋରି ବସିଛି । ସିଏ ମର୍ତ୍ତ୍ୟରେ ଭୋଗବିଳାସର ସ୍ୱର୍ଗ ନିର୍ମାଣ ପାଇଁ କଳ-ବଳ-କୌଶଳ ପ୍ରୟୋଗ କରୁଛି । ଏହି ନୀତିକୁ ମଣିଷ କିପରି ବିଭିନ୍ନ କ୍ଷେତ୍ରରେ ପ୍ରୟୋଗ କରୁଛି-ତାହା ଦେଖିବା ଆସନ୍ତୁ । ପ୍ରଥମେ ବନ୍ଧୁତା କଥାକୁ ଦେଖନ୍ତୁ -ଆପଣ ଯିଏ ବି ହୁଅନ୍ତୁ (ମନ୍ତ୍ରୀ, ଯନ୍ତ୍ରୀ, ତନ୍ତ୍ରୀ, ଶିକ୍ଷକ, ଓକିଲ, ନେତା, ଚାଷୀ,ବେପାରୀ ବା ଅନ୍ୟ କେହି) କାହାରି ନା କାହାରି ସହିତ ଆପଣଙ୍କର ଚିହ୍ନା ପରିଚୟ ଓ ଆତ୍ମୀୟତା ଥିବ । ଏହାକୁ ଆପଣ ସାଙ୍ଗ, ସାଥୀ, ବନ୍ଧୁ, ସହି, ସଙ୍ଗାତ, ମଇତ୍ର ଯାହାବି କହି ପାରନ୍ତି । ଏହି

ବନ୍ଧୁତାକୁ ନେଇ କେତେ କିମ୍ବଦନ୍ତୀ ଓ ଲୋକକଥାର ପ୍ରଚଳନ ଅଛି-କେତେ ଇତିହାସ ଓ ପୁରାଣ ସୃଷ୍ଟି ହୋଇଛି । କୃଷ୍ଣ-ସୁଦାମାଙ୍କ ବନ୍ଧୁତା କଥା ତ ଆମେ ସମସ୍ତେ ଜାଣିଛେ । ସେମାନଙ୍କ ବନ୍ଧୁତାରେ ଛୋଟବଡ଼ କି ଗରୀବ ଧନୀର ବ୍ୟବଧାନ ନଥିଲା-ସ୍ୱାର୍ଥ କି ପରଶ୍ରୀକାତରତା ଭାବ ନଥିଲା ।

କିନ୍ତୁ, ଏବେ ସେ ଜମାନା ବଦଳି ଗଲାଣି । ଯୁଗ ବଦଳିବା ସହିତ ମଣିଷର ମନ, ଚିନ୍ତା ଓ ଭାବଧାରା ସବୁ କିଛି ବଦଳି ଯାଇଛି । ନିଜର ସ୍ୱାର୍ଥସାଧନ ପାଇଁ ଆଜି ବନ୍ଧୁତା, ଭାବ-ଦିଆନିଆ ସବୁକିଛି । ମନ ମାନିଛି ତ ବନ୍ଧୁ-ସହି-ସଙ୍ଗାତ-ମଇତ୍ର ଆଦି କେତେ କ'ଣ ! ଦୁହିଁଙ୍କ ଭିତରେ ପାଣି ଗଳିବନି । ଆପଣ କହିବେ ତ ଘୋଡ଼ାର ଦୁଇଟା ଶିଙ୍ଗ, ବନ୍ଧୁ କହିବେ ହଁ ଦୁଇଟା । ବନ୍ଧୁଙ୍କୁ ଯଦି ଦଉଛନ୍ତି ନଉଛନ୍ତି -ତେବେ ଆପଣ ଭଲ- ଆପଣଙ୍କର କଥା, ଚାଲି, ହସ ସବୁ ଭଲ । ଦବାନବାରେ ଯଦି ଟିକେ ଓଲମ ବିଲମ୍ ହେଲା, ତେବେ ଆପଣଙ୍କ ମୁହଁ ପୂର୍ବକୁ ତ ବନ୍ଧୁଙ୍କ ମୁହଁ ପଶ୍ଚିମକୁ । ଆପଣଙ୍କ ପାଖରେ ପଇସାପତ୍ର ଅଛି ତ ତେଲ ମର୍ଦ୍ଦନରେ ଅସୁବିଧା ହେବ ନାହିଁ-ବନ୍ଧୁମାନଙ୍କର ଅଭାବ ହେବ ନାହିଁ । ଯଦି ପାଖରୁ ପଇସାପତ୍ର ସରିଗଲା-କି ଜାଣିଶୁଣି ଆପଣ ତଥାକଥିତ ବନ୍ଧୁମାନଙ୍କର ଓରିମାନା ମେଣ୍ଟାଇ ପାରିଲେନି, ତେବେ ଦେଖିବେ ବନ୍ଧୁତାରେ ସଙ୍ଗେ ସଙ୍ଗେ ଡ଼ୋରି ବନ୍ଧା ହୋଇଯିବ । ଆତ୍ମୀୟତା ଫସର ଫାଟି ଯିବ । ସେଥିପାଇଁ ପରା କୁହାଯାଇଛି -'ଟଙ୍କା ମୁହଁ କରେ ବଙ୍କା ।' ଟଙ୍କା ନାହିଁ ତ କିଛି ନାହିଁ-ଆପଣ ଫକଡ଼ରାମ ଗିରିଧାରୀ । ଡାବୁ ଥିଲେ ବାବୁ, ଡାବୁ ସରିଗଲେ କାବୁ ।' ଆପଣଙ୍କ ବିଷୟରେ ବାଟରେ ଘାଟରେ ଚର୍ଚ୍ଚା ଚାଲିବ- ବନ୍ଧୁ ଜଣକ ନିଜେ ତ ଶତ୍ରୁ ହୋଇ ଛିଡ଼ା ହେବେ-ତା ସଙ୍ଗେ ସଙ୍ଗେ ନିଜ ଚିହ୍ନା ପରିଚିତମାନଙ୍କୁ ମଧ୍ୟ ଶତ୍ରୁ ବନାଇ ଆପଣଙ୍କ ପଛରେ ଛିଡ଼ା କରାଇବେ । ଚୋର ମାଆ କାନ୍ଦିଲେ, ଆଖି ମଳି ମଳି କାନ୍ଦିବା ପରି ଆପଣ କାହାକୁ କିଛି କହି ପାରିବେନି, କି କାହାରି କିଛି କରି ପାରିବେନି । କହିଲେ ଶତ୍ରୁ, ନ କହିଲେ ଦେଇ ଦେଇ ଦେବାଳିଆ । ଏଣୁ ମାଇଲେ ମଲି, ତେଣୁ ମାଇଲେ ମଲି ପରି ଆପଣଙ୍କ ଅବସ୍ଥା ।

ଖାଲି ବନ୍ଧୁତା କ୍ଷେତ୍ରରେ ନୁହେଁ, ମଣିଷର ଏହି ନିର୍ମୂଳିଳତା ପରି ବଞ୍ଚିବା ପ୍ରବୃତ୍ତି, ସବୁଠି ସବୁ କ୍ଷେତ୍ରରେ ବାହୁ ବିସ୍ତାର କରି ଚାଲିଛି । ପାରିବାରିକ ଜୀବନ କୁହନ୍ତୁ କି ଜାତୀୟ ଜୀବନ - ସବୁଠି ନିଜର ସ୍ୱାର୍ଥ ସାଧନ ପାଇଁ ଅହରହ ସଂଗ୍ରାମ ଚଳାଇଛି ଆଜିର ମଣିଷ । ସମ୍ବିଧାନ ବଦଳିବା ପରି ଗୋପବନ୍ଧୁଙ୍କର ସେହି ପୁରୁଣା ପୁସ୍ତାନୀ ଆଜି ବଦଳି ଗଲାଣି । ଏବେ କେତେକ କହୁଥିବାର ଶୁଣିବାକୁ ମିଳିଲାଣି-

''ମିଶୁ ଦେଶ ପାଣି ମୋ ନିଜ ପାଣିରେ
ଦେଶବାସୀ ମଲେ ମରନ୍ତୁ ଭୋକରେ ।
ସ୍ୱଦେଶର ପଥେ ଅଛି ଯେତେ ଗାଡ଼
ପୁରୁ ତାହା ପଡ଼ି ତୁମ ମାଂସ ହାଡ଼ ।।''

ସ୍ୱାର୍ଥର ଚେର ମଣିଷ ମନର ଏପରି ଗହୀରକୁ ପ୍ରବେଶ କରିଯାଇଛି ଯେ, ତା'ର ମୂଳ ଉତ୍ପାଟନ ଅସମ୍ଭବ ହୋଇ ପଡ଼ିଛି । ସାମାନ୍ୟ ସ୍ୱାର୍ଥ ପାଇଁ ଆଜି ମଣିଷ ନିଜର ଜନ୍ମକଲା ପିତାମାତା, ରକ୍ତ ସମ୍ପର୍କୀୟ ଭାଇଭଉଣୀ କାହାରି ମୁହଁକୁ ଚାହୁଁ ନାହିଁ । ପାରିବାରିକ ଜୀବନର ଉଦାହରଣଟିଏ ନିଅନ୍ତୁ-ଯଦି ବାପାମାଆଙ୍କ ପାଖରେ ଅଧିକ ଧନସମ୍ପତ୍ତି ଅଛି, ତେବେ ଆଜିର ସନ୍ତାନ ତାକୁ ନିଜ ଆୟତ୍ତକୁ ଆଣିବାକୁ କିପରି ହୀନ ଚକ୍ରାନ୍ତ କରି ଆୟତ୍ତ କରୁଛି ସେ କଥା ଆମେ ଭଲଭାବେ ଜାଣିଛେ । କାଳେ ଅନ୍ୟ ଭାଇ ଭଉଣୀ ସେଥିରୁ ଭାଗ ନେଇଯିବେ ସେଥିପାଇଁ ନାନା ଉପାୟ ଅବଲମ୍ବନ କରାଯାଉଛି । ଲୋକ ଦେଖାଣିଆ ସେବାଯତ୍ନ ହେଉ କିମ୍ବା ଗୁଣିଗାରେଡ଼ି ବା ଧମକଚମକ ଦ୍ୱାରା ହେଉ-କୌଣସି ଉପାୟରେ ସମ୍ପତ୍ତିତକ ନିଜ ଆୟତ୍ତକୁ ଆସିଗଲେ ତେଣିକି ବାପମାଆ କିଏ ନା ତମେ କିଏ? ପୂର୍ବର ସେବାଯତ୍ନ, ସ୍ନେହ ମମତା ସବୁ ପାଣିରେ ମିଳାଇ ଯାଉଛି । ନେଡ଼ିଗୁଡ଼ କହୁଣୀକୁ ବୋହିଗଲା ପରେ ବିଚରା ବୃଦ୍ଧ ପିତାମାତା ''ମିଛ ମାୟା ସଂସାର, କେହି ନୁହେଁ କାହାର'' ନୀତିଟିକୁ ନିଜ ଜୀବନରେ ଆଦରି ନେଇ ଆଖି ଲୁହ ଆଖିରେ ମାରି କାଳାତିପାତ କରନ୍ତି । ଅଜାଗା ଘା ଦେଖାଇ ନହେବା ପରି ନିଜ ପୁଅବୋହୂ କି ଝିଅଜୋଇଁଙ୍କର କାର୍ଯ୍ୟକଳାପକୁ କାହା ଆଗରେ ମୁହଁ ଖୋଲି କହି ପାରନ୍ତି ନାହିଁ ।

ବୁଡି ଯାଉଥିବା ଲୋକ, ଜୀବନ ବିକଳରେ କୁଟାଖିଅକୁ ଆଶ୍ରା କରିବା କଥା ଆମେ ସମସ୍ତେ ଜାଣୁ । କିନ୍ତୁ ନିଜ ସହିତ ଅନ୍ୟମାନଙ୍କୁ ବିପଦ ମୁହଁକୁ ଠେଲିଦେବା ନୀତି ଆଜି ଏକ ଚଳଣିରେ ପରିଣତ ହେଲାଣି । ଆପେ ବଞ୍ଚିଲେ ବାପାର ନାଁ କଥାଟିକୁ ସମସ୍ତେ ଆଦରି ନେଇ, ଅନ୍ୟର ବିପଦ ଆପଦରେ ତାକୁ ସାହାଯ୍ୟ ସହଯୋଗ କରିବା ପରିବର୍ତ୍ତେ, ସେ କିପରି ଆହୁରି ହଇରାଣ ହେଉ ତାହା ଆଜିର ଲୋକ ଚରିତ୍ରର ବିଶେଷତ୍ୱ ହୋଇଛି । କାରଣ ଅନ୍ୟର ହୀନିମାନିଆ ଅବସ୍ଥା ଦେଖି ଆମକୁ କାଠି ପୁରାଇ ଛିଙ୍କିବାକୁ ସୁଯୋଗ ମିଳିବ । ପୁଣି ''ନଇଁ ପଡ଼ିଥିବ ଯେତିକି ବେଳେ, ବିଧାଏ ମାରିବ ସେତିକି ବେଳେ'' ନୀତିଟିକୁ ଆମେ ମୁହେଁ ମୁହେଁ ମୁଖସ୍ଥ କରି କାର୍ଯ୍ୟରେ ପରିଣତ କରିବାକୁ କେବେ ପଛଘୁଞ୍ଚା ଦେଉ ନାହୁଁ ।

ସମୟ ଥିଲା ମଣିଷ ସୁଖ ଶାନ୍ତିରେ ବସବାସ କରୁଥିଲା । ଲୋଭ-ଅହଙ୍କାର-ଗର୍ବ-ସ୍ୱାର୍ଥ ଆଦି ଠାରୁ ଦୂରେଇ ରହୁଥିଲା । ସୁନାମୁଣ୍ଡା ଦେଖିଲେ ବି ନ ଦେଖିଲା ପରି ବାଟ ଭାଙ୍ଗି ଚାଲି ଯାଉଥିଲା - ଚୋର ଟକ୍କରଙ୍କ ଭୟ ନଥିଲା । ଦାନ, ସେବା, ପରୋପକାର କରିବା ଲୋକଙ୍କର ନୈତିକ କର୍ତ୍ତବ୍ୟ ରୂପେ ବିବେଚିତ ହେଉଥିଲା । କିନ୍ତୁ, ସେ ଯୁଗ, ସେ ଜମାନା ଆଜି ପୁରାପୁରି ବଦଳି ଗଲାଣି । ଆଜି କେତେ ଜଣ ନୀଳକଣ୍ଠ ବାହାରିବେ ନିଜେ ବିଷ ପାନ କରି ଅନ୍ୟକୁ ଅମୃତ ପରଷି ଦେବାକୁ ? ନିଜେ ଉପାସ ରହି ଅନ୍ୟର କ୍ଷୁଧା ମେଣ୍ଟାଇବାକୁ ? ଆଜି ରୋଗୀଟିଏ କି ଭିକାରୀଟିଏ ଦେଖିଲେ ସେମାନଙ୍କୁ

ସହାନୁଭୂତି କି ଭିକ ମୁଠାଏ ଦେବା ତ ଦୂରର କଥା, ସେମାନଙ୍କୁ ଦୂର୍ ଦୂର୍, ମାର୍ ମାର୍ କହି ଘଉଡ଼ାଇ ଦେବାକୁ ନିଜର ବାହାଦୂରୀ ଓ ବୀରତ୍ୱର ମନୋବୃତ୍ତି ବୋଲି ବିଚାର କରାଯାଉଛି ।

ମଣିଷର ଏଇ ସ୍ୱାର୍ଥ ସର୍ବସ୍ୱ ମନୋବୃତ୍ତି ଯେତେବେଳେ ଧରାପଡ଼େ-ତାର ପ୍ରକୃତ ମୁଖା ଖୋଲିଯାଏ । ସମସ୍ତଙ୍କ ପାଖରେ ତା କଥା ପହଁଞ୍ଚିଯାଏ । ସେତେବେଳେ ତାର ନିଜସ୍ୱ ବୋଲି କିଛି ରହେ ନାହିଁ । ସେହି ସଂକଟ ସମୟରେ ସେ ନିଜର ଦୋଷ ଦୁର୍ବଳତାକୁ ଲୁଚାଇବା ପାଇଁ, ପାପରୁ ପୁଣ୍ୟ ଓ ଅଧର୍ମରୁ ଧର୍ମ ଆଡ଼କୁ ଯିବାକୁ ଅଯଥା ଚେଷ୍ଟା କରେ । ତା ସହିତ ନିଜର ପାପକୁ ଅନ୍ୟ ଉପରେ ଲଦି ଦେବାକୁ କୁଣ୍ଠିତ ହୁଏ ନାହିଁ । ନିଜେ କୂଅ ଭିତରକୁ ଡେଇଁ ପଡ଼ିବା ପୂର୍ବରୁ ତକ୍ଷକ ସର୍ପ ପରି ଅନ୍ୟ ଜଣକୁ ଜାବୁଡ଼ି ଧରି ମନେ ମନେ ଭାବେ, ମୁଁ ଏକା କାହିଁକି ଖାଲରେ ପଡ଼ିବି, ମୋ ସହିତ ଅନ୍ୟ ଜଣକୁ ମଧ୍ୟ ସାଙ୍ଗରେ ଭିଡ଼ି ଧରି ଡେଇଁ ପଡ଼ିବି ।

ଏଇ ସ୍ୱାର୍ଥ ସର୍ବସ୍ୱ ମତଲବୀ ମଣିଷମାନଙ୍କୁ ନେଇ କ'ଣ ସମାଜ ତିଷ୍ଠି ରହିବ? ଖଳବୁଦ୍ଧି ଦୁର୍ଯ୍ୟୋଧନମାନଙ୍କୁ ନେଇ କ'ଣ ଦେଶ ଗର୍ବ କରିବ? ଦେଶର ସୁଖ-ଶାନ୍ତି-ସମୃଦ୍ଧି ପାଇଁ ପ୍ରଥମେ ଆମକୁ ପରପିଠିରେ ନାଉ ହେବା ନୀତିଟିକୁ ପରିହାର କରିବାକୁ ହେବ-ଗୋଡ଼ଟଣା ନୀତି ଠାରୁ ଦୂରେଇ ରହିବାକୁ ହେବ-ସମୂହ ସ୍ୱାର୍ଥ ନିକଟରେ ବ୍ୟକ୍ତିଗତ ସ୍ୱାର୍ଥକୁ ବଳି ଦେବାକୁ ହେବ । ତେବେ ଯାଇଁ ନିଜର, ପରିବାରର, ସମାଜର ସର୍ବୋପରି ଦେଶର ମଙ୍ଗଳ ହେବ । ମାତ୍ର, ସେ ସମୟ ଆଉ କେତେ ବାକି ???

ସମୟ କାହାକୁ ଅପେକ୍ଷା କରେନା । ସମୟକୁ ଆମେ ଆଡେଇ ଗଲେ, ସମୟ ଆମକୁ ଆଡେଇ ଯିବ । ତେବେ ଆସନ୍ତୁ ସମସ୍ତେ ଏକ ମନ ଏକ ପ୍ରାଣ ହୋଇ କଣ୍ଠକୁ କଣ୍ଠ ମିଳାଇ ଉତ୍କଳଗୌରବ ମଧୁସୂଦନଙ୍କ ସେଇ ଅମର ବାଣୀକୁ ଦୋହରାଇବା ସହିତ କାର୍ଯ୍ୟରେ ପରିଣତ କରିବା -

"ଜାତି ନନ୍ଦିଘୋଷ ଚଳିବ କି ଭାଇ
ସ୍ୱାର୍ଥକୁ ସାରଥି କଲେ,
ଟାଣେ କିରେ ଗାଡ଼ି ଦାନାର ତୋବଡ଼ା
ଘୋଡ଼ା ମୁଖେ ବନ୍ଧା ଥିଲେ ।"



# ଛୁଞ୍ଚିମୁହାଁଙ୍କ ସପକ୍ଷରେ

ଭଗବାନଙ୍କ ସୃଷ୍ଟିରେ ମଣିଷ ହେଉଛି ଶ୍ରେଷ୍ଠ ପ୍ରାଣୀ । କାରଣ ତାର କଥା କହିବା ସହିତ ଚେତନା ଶକ୍ତି ରହିଛି । ସେ ଭଲମନ୍ଦର ବିଚାର କରିପାରେ । ତା ସହିତ ନିଜର କେତେକ ହୀନ ପ୍ରବୃତ୍ତି ଓ କାର୍ଯ୍ୟକଳାପ ଦ୍ୱାରା ସେ ପଶୁମାନଙ୍କ ଠାରୁ ନିକୃଷ୍ଟ ବୋଲି ମଧ୍ୟ ବିବେଚିତ ହୁଏ । ଏହା ଶୁଣି ଆପଣମାନେ ନିଶ୍ଚୟ ମୋ ଉପରେ ରାଗି ଖପ୍‌ପା ହୋଇ ଯିବେଣି-ସତ କହିଲେ ଆହାର, ନିଦ୍ରା, ଭୟ ଓ ମୈଥୁନରେ ମଣିଷ ପଶୁମାନଙ୍କ ଠାରୁ ନିକୃଷ୍ଟ କି ନୁହେଁ? ଆପଣଙ୍କ ଚାରିପାଖର ମଣିଷମାନଙ୍କ ପ୍ରକୃତି ଓ ରୁଚିକୁ ଦେଖି ଏ କଥା ମର୍ମେ ମର୍ମେ ଅନୁଭବ କରନ୍ତୁ । ବନେଇ ଚୁନେଇ ନାନା ଉଦାହରଣ ଦେଇ ମୋତେ ଅଧିକା କହିବା ପାଇଁ ପଡ଼ିବ ନାହିଁ ।

ଦେଖୁ ନାହାନ୍ତି-ଏହି ମଣିଷମାନଙ୍କ ଭିତରୁ ଜଣେ ଅନ୍ୟ ଜଣଙ୍କ ପାଇଁ ସର୍ବସ୍ୱ ତ୍ୟାଗ କରୁଥିବା ବେଳେ, ଅନ୍ୟ ଜଣେ ପରର ଧନସମ୍ପତ୍ତି ଲୁଟି ନେବା ପାଇଁ କୁଣ୍ଠିତ ହେଉନାହିଁ । ସର୍ବସାଧାରଣଙ୍କ ଉନ୍ନତି ପାଇଁ ଯଦି କିଛି ଦାୟିତ୍ୱ ଏହି ଶ୍ରେଣୀର ମଣିଷକୁ ଦିଆଯାଉଛି-ତେବେ ସେଥିରୁ ନିଜ ପାଇଁ କେତେ ଫାଇଦା ମିଳିବ ତା'ର ଉନ୍ନତ ମଗଜରେ ପ୍ରଥମେ ସ୍ଥାନ ପାଉଛି । ମଣିଷ ପ୍ରକୃତି ପରା, ମଲେ ଯାଇ ତୁଟିବ । ମୋତେ ଯେତେ ମାଠିବୁ ମାଠ, ମୁଁ ସେହି ଦରପୋଡ଼ା କାଠ । ଯେତେ ବୁଝାସୁଝା କର-ନେହୁରା ହୋଇ ଗୋଡ଼ ହାତ ତଳେ ପଡ଼, ତାର ପ୍ରକୃତିକୁ କ'ଣ ସେ ଛାଡ଼ି ପାରିବ ?

ସେହି ମଣିଷମାନଙ୍କ ଭିତରେ ଅନେକ ଅଛନ୍ତି, ଯେଉଁମାନେ ରୋକ୍ ଠୋକ୍ ମୁହେଁ ମୁହେଁ ଜବାବ୍ ଦିଅନ୍ତି । ସତ୍ୟ ଧର୍ମ ଓ ନ୍ୟାୟକୁ ଆପଣା ଜୀବନର ବ୍ରତ ଭାବରେ ଗ୍ରହଣ କରି ସର୍ବଦା ଠିକ୍ ରାସ୍ତାରେ ଚାଲନ୍ତି । ଦୁଃଖ, କଷ୍ଟ, ବିପଦ ଆପଦକୁ ସେମାନଙ୍କର ଭୟ କି ଭ୍ରୂକ୍ଷେପ ନଥାଏ । ଅନ୍ୟାୟ, ଅନୀତି ଓ ଦୁର୍ନୀତିକୁ ସେମାନେ ଆଦୌ ବରଦାସ୍ତ କରନ୍ତି ନାହିଁ । ''ମୋ ଜୀବନ ପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ହେଉ'' ନୀତିବାଣୀଟିକୁ ଜୀବନର ମୂଳମନ୍ତ୍ର କରି ସର୍ବଦା କାର୍ଯ୍ୟ କରି ଚାଲନ୍ତି ।

ଆଉ ଥୋକେ ଅଛନ୍ତି, ଯେଉଁମାନେ ଉପରେ ହସି ହସି କଥା କହି ଭିତରେ ଭିତରେ ଚେ଼ର କାଟୁଥାଆନ୍ତି । ତୁଣ୍ଡେ ହରି, ପେଟେ ଛୁରୀ ମାରିବାରେ ସେମାନେ ଓସ୍ତାଦ୍ । ଏମାନଙ୍କୁ ଆମେ କପଟିଆ ବା ଛୁଆଁମୁହାଁ କହିଥାଉ । କେହି କେହିବି ସେମାନଙ୍କୁ କୁତୁରୁପିଆ, ଚୁପ୍ ସଇତାନ, ତୁଳସୀ ବଣର ବାଘ, ବିରାଡ଼ି ବୈଷ୍ଣବ ଆଦି ବିଭିନ୍ନ ନାମ ଦେଇ ସମ୍ବୋଧନ କରିଥାନ୍ତି । ସବୁଠି ନାଟ ଲଗେଇ ଦେଇ ଚୁପ୍‌ଚାପ୍ ବସି ନାଟ ଦେଖୁଥିବାରୁ ସେମାନଙ୍କୁ ନାଟର ଗୋବର୍ଦ୍ଧନ ମଧ୍ୟ କୁହାଯାଏ । କୂଟନୀତି ବଳରେ ସେମାନେ ବାଘ ବକରୀକୁ ଗୋଟିଏ ତୁଠରେ ପାଣି ପିଆଇ ପାରନ୍ତି । ସେମାନଙ୍କୁ ଦେଖି ଗର୍ଭିଣୀ ଗାଈ ମଧ୍ୟ ବାଟ ଛାଡ଼ି ଦିଏ ।

ଟଙ୍କାର ଦୁଇପାଖ ପରି ପ୍ରତ୍ୟେକ ଜିନିଷର ଦୁଇଟି ପାଖ ରହିଛି । ଯଥା-ଭଲ ମନ୍ଦ, ଦୁଃଖ ସୁଖ, ସପକ୍ଷ ବିପକ୍ଷ ଇତ୍ୟାଦି ଇତ୍ୟାଦି । ସଂସାରରେ ଭଲ ଗୁଣ, ଭଲ ଜିନିଷ ଓ ଭଲ କଥାର ଉପକାରିତା ଲୋକମାନଙ୍କ ପାଖରେ ଶୀଘ୍ର ପହଞ୍ଚି ପାରୁ ନଥିବା ବେଳେ ଖରାପ ଗୁଣ, ଖରାପ ଜିନିଷ ଓ ଖରାପ କଥା ଖୁବ୍ ଶୀଘ୍ର ପହଞ୍ଚି ଯାଏ । ସେଥିପାଇଁ ବୋଧେ ଲୋକେ ଭଲ କଥା ଅପେକ୍ଷା ଭେଲ କଥା ଅଧିକ ଚିନ୍ତା କରନ୍ତି ।

ମାତ୍ର, ମୁଁ ଏଠି ଛୁଆଁମୁହାଁଙ୍କ ବିପକ୍ଷରେ ନକହି ସପକ୍ଷରେ କହୁଛି । ଅନ୍ୟମାନେ ସେମାନଙ୍କୁ ଦେଖି ନାକ ଟେକୁଥିବା ବେଳେ, ସେମାନଙ୍କ ଗୁଣଗାରିମା ମୋତେ ମହମହ ହୋଇ ବାସୁଛି । ସେମାନଙ୍କ ଆଚାର ବ୍ୟବହାର ଅନ୍ୟମାନଙ୍କୁ ଖରାପ ଲାଗୁଥିବା ବେଳେ ମୋତେ ଭଲ ଲାଗୁଛି । ଛୁଆଁମୁହାଁଙ୍କ ସପକ୍ଷରେ ମୋର ଯୁକ୍ତି ଶୁଣିଲେ ଆପଣମାନେ ମଧ୍ୟ ସେମାନଙ୍କ ପ୍ରତି ଅନୁରକ୍ତି ଭାବ ପ୍ରକାଶ କରିବେ ।ସେମାନଙ୍କ ଗୁଣଗାରିମାର ତାରିଫ୍ କରି ସେମାନଙ୍କୁ ଆପଣେଇ ପାରିବେ ।

ଛୁଆଁମୁହାଁମାନଙ୍କୁ ସାଧାରଣ ଲୋକେ ଆନ୍ତରିକତାର ସହିତ ଭଲ ନ ପାଇଲେ ମଧ୍ୟ ଭୟ କରନ୍ତି । ଦୂରରୁ ଦେଖୁ ଦେଖୁ ମୁଣ୍ଡ ନୁଆଁଇ ଜୁହାର ହୁଅନ୍ତି । ଛୁଆଁମୁହାଁମାନେ ମଧ୍ୟ ସଙ୍ଗେ ସଙ୍ଗେ ନିଜର ବତିଶ୍‌ଟା ଦାନ୍ତ ଦେଖାଇ ମନଖୋଲା ହସ ହସି ଦିଅନ୍ତି । ଯଦି ଜୁହାରରେ ଟିକେ ଏପଟ ସେପଟ ହେଲା, ତେବେ ସଙ୍ଗେସଙ୍ଗେ ତାଙ୍କ ମୁହଁଟା ଧାନ ଉଷା ହାଣ୍ଡି ପରି ହୋଇଯାଏ । ସେତିକିରେ କଥା ସରେ ନାହିଁ-ତା ପରେ ଆପଣଙ୍କ ଦୋଷ, ଦୁର୍ବଳତା ଖୋଜି, କିପରି ହଇରାଣ ହରକତ୍ କରିବେ ସେଥିପାଇଁ ଯୋଜନା ପ୍ରସ୍ତୁତ ହୋଇଯାଏ । ଏହି କାରଣରୁ ସାଧାରଣ ଲୋକେ ଇଛା ନଥିଲେ ମଧ୍ୟ ଛୁଆଁମୁହାଁମାନଙ୍କୁ ଦେଖୁଦେଖୁ ନମସ୍କାରଟିଏ ପକାଇ କୁଶଳ ଜିଜ୍ଞାସା କରନ୍ତି । ନଚେତ୍ ହଇରାଣ ହରକତ୍ ହୋଇ କିଏ ମରିବ ? କିଏ ବା ଅଛି କେଉଁ ମତେ, ତାହା ମୁଁ ଜାଣିବି କେମନ୍ତେ ?

ସମାଜରେ କାଳେ କାଳେ ଛୁଞ୍ଚିମୁହାଁମାନଙ୍କର ଅଖଣ୍ଡ ରାଜତ୍ୱ । କେତେବେଳେ ବେଶି ଅବା କେତେବେଳେ କମ୍ । ସେମାନେ ନଥିଲେ ପରିବାର, ସମାଜ କି ଦେଶରେ ହଇଚଇ ସୃଷ୍ଟି ହୁଅନ୍ତା ନାହିଁ । ସମସ୍ତଙ୍କ ଜୀବନ ଗୋଟିଏ ଶଗଡ଼ ଗୁଳାରେ ଗତି କରନ୍ତି । ବ୍ୟକ୍ତିଗତ ଜୀବନରେ ଏମିତି ଧାଁ ଦଉଡ଼ ଓ ପ୍ରତିଯୋଗିତା ମନୋଭାବ ପ୍ରକାଶ ପାଆନ୍ତା ନାହିଁ । ସମସ୍ତେ ନିଷ୍କ୍ରିୟ ଓ ଅକର୍ମଣ୍ୟ ହୋଇ ଯାଆନ୍ତେ । ଜୀବନ ଯେମିତି ଗୋଟିଏ ବିନ୍ଦୁରେ ଅଟକି ଯାଆନ୍ତା । ଏମିତି ସାଧାସିଧା ପ୍ରତିକ୍ରିୟାହୀନ ଜୀବନକୁ କ'ଣ ଆମେ ଜୀବନ କହି ପାରିବା !

ଯେଉଁମାନେ ସେମାନଙ୍କୁ ବିଭିନ୍ନ ବିଶେଷଣ ପ୍ରୟୋଗ କରି ଡାକୁଛନ୍ତି, ସେମାନେ ଛୁଞ୍ଚିମୁହାଁମାନଙ୍କ ଆଗରେ ମୁହଁ ଖୋଲି ଉଁ କି ଚୁଁ କହିପାରିବେ ନାହିଁ । ପଛରେ ଖାଲି ଯେତେ ବକ୍ ବକ୍ ଓ ଟିକାଟିପ୍ପଣୀ । ମୁଁ ତ ଆଗରୁ କହିଛି ସେମାନଙ୍କ ସପକ୍ଷରେ ହିଁ କହିବି । ତେଣିକି ବିଶ୍ୱାସ କରିବା ନ କରିବା ଆପଣଙ୍କ ଇଚ୍ଛା ଉପରେ ନିର୍ଭର କରେ । କାରଣ ଆମେ ଗଣତନ୍ତ୍ର ଦେଶରେ ବସବାସ କରିବା ସହିତ ଗଣତନ୍ତ୍ର ରାଷ୍ଟ୍ରର ଜଣେ ଜଣେ ସଚେତନ ନାଗରିକ ।

ସୃଷ୍ଟି ଆରମ୍ଭ କଥାରୁ ମୁଁ ପ୍ରଥମେ ଆରମ୍ଭ କରୁଛି । ସମୁଦ୍ର ମନ୍ଥନରୁ ମିଳିଥିବା ଅମୃତକୁ କେବଳ ଦେବତାମାନଙ୍କୁ ପ୍ରଦାନ କରିବା ପାଇଁ ସ୍ୱୟଂ ଭଗବାନଙ୍କୁ ଏକଦା ମୋହିନୀ କନ୍ୟା ରୂପ ଧାରଣ କରିବାକୁ ପଡ଼ିଥିଲା । ସ୍ୱୟଂ ସୃଷ୍ଟିକର୍ତ୍ତା ଯେତେବେଳେ କପଟ ଆଚରଣ କରି ପାରୁଛନ୍ତି, ସେତେବେଳେ ସାଧାରଣ ମଣିଷ ବା ଏହି ପ୍ରବୃତ୍ତିକୁ କିପରି ପରିତ୍ୟାଗ କରି ପାରିବ? ଆଉ ଗୋଟେ ଦୁଇଟି ଉଦାହରଣ ଦେଲେ ମୋର ଯୁକ୍ତିଟି ଆପଣଙ୍କ ମନକୁ ନିଶ୍ଚୟ ପାଇବ ।

ତ୍ରେତୟା ଯୁଗର ଅବତାରୀ ପୁରୁଷ ରାମଙ୍କ ବନବାସ କଥାକୁ ଦେଖନ୍ତୁ । ମନ୍ଥରା ବୁଦ୍ଧିରେ ଯଦି ରାଣୀ କୈକେୟୀ କପଟ ଆଚରଣ କରି ବର ମାଗି ନଥାନ୍ତେ, ତେବେ ରାମଚନ୍ଦ୍ର କ'ଣ ପିତୃ ସତ୍ୟ ପାଳି ବଣକୁ ଯାଇଥାନ୍ତେ ?-ନା ରାମ ରାବଣ ଯୁଦ୍ଧ, ରାବଣ ବଧ ସହିତ ଅସୁର ବଂଶର ବିନାଶ ଘଟିଥାନ୍ତା । ପ୍ରାଥମିକ ସ୍ତରରେ କପଟ ଆଚ଼ରଣକୁ ଆମେ ସହଜରେ ଗ୍ରହଣ କରି ପାରୁ ନଥିଲେ ହେଁ, ପରିଶେଷରେ ଏହା ସୁଫଳ ପ୍ରଦାନ କରେ । ସେଥିପାଇଁ ଛୁଞ୍ଚିମୁହାଁଙ୍କ ସଂପର୍କରେ ଲୋକ ସାହିତ୍ୟରେ କୁହାଯାଇଛି-"କୈକେୟୀ ରାଣୀ, ଭିତରେ ଭିତରେ କାଟୁଛି ବାଣୀ ।"

ସେହିପରି ଦ୍ୱାପର ଯୁଗର ମହାଭାରତ କଥା । ଶକୁନିଙ୍କ କପଟ ପଶା ଓ ଆଚ଼ରଣ ପାଇଁ ମହାଭାରତ ଯୁଦ୍ଧର ସୂତ୍ରପାତ । ପାଣ୍ଡବ ସଖା ଶ୍ରୀକୃଷ୍ଣ କପଟ ଆଚରଣରେ କେଉଁ କମ୍ କି ? ବିଜ୍ଞ, ଜ୍ଞାନୀ ପଣ୍ଡିତମାନେ ସେଥିପାଇଁ କୃଷ୍ଣଙ୍କୁ କପଟି କୃଷ୍ଣ ଭାବରେ ବର୍ଣ୍ଣନା କରିଛନ୍ତି । ସତ୍ୟବାଦୀ ଯୁଧିଷ୍ଠିର ନିଜର ତଥା ପାଣ୍ଡବମାନଙ୍କର ରକ୍ଷା ପାଇଁ,

''ନରେ ବା ଗୁଞ୍ଜରେ ଅଶ୍ୱତ୍ଥମା ହତ'' କହି କପଟ ଆଚରଣ କରିଥିଲେ । ଗୁରୁ ଦ୍ରୋଣ କପଟ ଆଚରଣ କରି ଯଦି ଏକଲବ୍ୟର ବୃଦ୍ଧାଙ୍ଗୁଳି ଗୁରୁ ଦକ୍ଷିଣା ଭାବେ ମାଗି ନଥାନ୍ତେ, ତେବେ ମହାଭାରତ ଯୁଦ୍ଧ ନିଶ୍ଚୟ ଭିନ୍ନ ମୋଡ଼ ନେଇଥାନ୍ତା ।

କୃଷ୍ଣ, ଯୁଧିଷ୍ଠିର ଓ ଦ୍ରୋଣ ଆଦି ମହାମାନବ ମାନେ ଯେତେବେଳେ କପଟ ଆଚରଣ କରିବା ପାଇଁ କୁଣ୍ଠା ପ୍ରକାଶ କରି ନାହାନ୍ତି, ସେତେବେଳେ ସାଧାରଣ ମଣିଷ ବା କେଉଁ ଗାଈର ଗୋବର ଯେ ?

ଛୁଞ୍ଚିମୁହାଁମାନଙ୍କୁ ଦେଖି ଦେଖି ସମସ୍ତେ ନାକଟାକୁ ଆଙ୍ଗୁଳିଏ ଟେକି ଦିଅନ୍ତି- ମୁହଁରେ କିଛି କହି ନ ପାରିଲେ ମଧ୍ୟ ରାଗରେ ଦାନ୍ତ କଡ଼ମଡ଼ କରନ୍ତି । କିନ୍ତୁ, ଏମିତି ଜଣେ ଅଧେ ସହଜ ସରଳ ସାଧାସିଧା ମଣିଷଟିଏ ଆମେ ଖୋଜି ପାଇବା ନାହିଁ, ଯିଏ କି ଜୀବନରେ ଆଦୌ କପଟ ଆଚରଣ କରିନାହିଁ । ଗାନ୍ଧୀ-ଗୋପବନ୍ଧୁଙ୍କ କଥା ଅଲଗା । ସହଜ, ସରଳ ଭାବେ ଆଜିକାଲି ଜୀବନ ଅତିବାହିତ କରିବା ସେତେ ସହଜ ନୁହେଁ । ଯିଏ ସାଧାସିଧା ଥିଲା ସିଏ ହଇରାଣ ହରକତ ହୋଇ ମଲା । ସେଥିପାଇଁ ଯଥାର୍ଥରେ କୁହା ଯାଇଛି-

''କପଟ ନକରେ କାହାରି ଠାରେ
ଛଟପଟ ହୋଇ ମରେ ସଂସାରେ ।''

ବିନା କପଟ ଆଚରଣରେ ଆଜିକାଲି ବଞ୍ଚିବା ମୁସ୍କିଲ୍ । ଯିଏ ଛୁଞ୍ଚିମୁହାଁ ନ ହେଲା ସିଏ ଠକିଲା-ଠିକିଲା-ଆଉ ଶେଷରେ ଶିଖିଲା । ନିଜ ସୁରକ୍ଷା ଓ ସୁବିଧା ପାଇଁ ସେହି କପଟ ପନ୍ଥା ଅବଲମ୍ବନ କଲା । ସେଥିପାଇଁ ବଡବଡିଆମାନେ କହିଛନ୍ତି- ''ବଞ୍ଚିବା ପାଇଁ କପଟ ଆଚରଣ କରିବା ପାପ ନୁହେଁ । କପଟତା ଠାରୁ ରମଣୀୟ ଓ ସୁନ୍ଦର ପ୍ରବୃତ୍ତି ଏ ସଂସାରରେ ଆଉ କିଛି ନାହିଁ ।''

ଆଜିକାଲି ଚାରିଆଡ଼େ ସୁଖ ସମ୍ଭୋଗର ଆତସବାଜି ଫୁଟୁଛି । ଅଧିକାଂଶ ଲୋକ ବିଳାସ ବ୍ୟସନରେ ଜୀବନ ଅତିବାହିତ କରୁଛନ୍ତି । ଆଧୁନିକ ସୁଖସୁବିଧାକୁ ହାତଛଡ଼ା କରି କିଏବା ଏହି ସମୟରେ ଧୈର୍ଯ୍ୟ ଧରି ଚୁପ୍‌ଚାପ ବସି ପାରିବ ? ତୋର ଦେଖି ମୋର ଡେଉଁଛି ଡାହାଣ ଆଖି ନୀତିକୁ ଅବଲମ୍ବନ କରି କଳେ ବଳେ କୌଶଳେ ସବୁକିଛି ହାସଲ କରିବା ପାଇଁ ସାଂପ୍ରତିକ ମଣିଷ ଉଦ୍ୟମ ଆରମ୍ଭ କରି ଦେଇଛି । ଏହି ଉଦ୍ୟମ ଅନ୍ତରାଳରେ କପଟ ପ୍ରବୃତ୍ତି ଅନ୍ତଃସଲୀଳା ଫଲ୍‌ଗୁ ପରି ପ୍ରବାହିତ ହେଉଛି ।

ମଣିଷର ଏହି କପଟ ଆଚରଣ ପ୍ରବୃତ୍ତିର ସ୍ୱରୂପ ନିଜ ନିଜ ପରିବାରରେ ଦେଖିବାକୁ ପାଇବା । ଯେତେବେଳେ ପରିବାର ମଧ୍ୟରେ ଆନ୍ତରିକତା କମିଯାଏ-ମୁଁ, ମୋର ଆଦି ଆତ୍ମଗର୍ବ ଭାବ ଜାଗରିତ ହୁଏ-ସେତେବେଳେ ସାଧାରଣ ମଣିଷ କପଟ ଆଚରଣ କରିବାକୁ ବାଧ୍ୟ ହୁଅନ୍ତି । ନିଜ ସୁଖ ସୁବିଧା ପାଇଁ ଟଙ୍କା ପଇସା ହାତ କରିବା

ଠାରୁ ଆରମ୍ଭ କରି ଜମିବାଡ଼ି ନିଜ ନାଁରେ କରିନେବାକୁ କୁଣ୍ଠିତ ହୁଅନ୍ତି ନାହିଁ । କାନ୍ଦୁଥିବୁ ଯାହା ପାଉଥିବୁ ବାନ୍ଧୁଥିବୁ ନୀତିବାଣୀଟିକୁ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ସେମାନେ ପ୍ରୟୋଗ କରନ୍ତି । ବଡ଼ବଡ଼ିଆମାନେ କଅଁଳ କଥାରେ ଏମିତି ପିଠିରୁ ଚୋପା ଛଡ଼େଇ ଦିଅନ୍ତି ଯେ ଶୋଷିତ ମଣିଷଟି କାନମୁଣ୍ଡା ଆଉଁସି ଚୁପ୍ ରହିବାକୁ ବାଧ୍ୟ ହୁଏ । ଉଚ୍ଚ ପଦାଧିକାରୀମାନେ ଏ ଦିଗରେ ଅଧିକ ସଫଳ ହୁଅନ୍ତି । ସେମାନଙ୍କୁ ଭୟ କରି ପିଅନ ତାଙ୍କ ଘରେ କାମ କରେ-ଅନ୍ୟ ତଳତଳିଆ କର୍ମଚାରୀମାନେ ସେମାନଙ୍କ ମାର୍କେଟିଂ ଠାରୁ ଆରମ୍ଭ କରି ସମସ୍ତ ବ୍ୟକ୍ତିଗତ କାର୍ଯ୍ୟ କରିଦେବାକୁ କୁଣ୍ଠିତ ହୁଅନ୍ତି ନାହିଁ । କାରଣ ବାବୁଙ୍କ ହାତରେ ତାଙ୍କ ଚାକିରୀର ଚରିତ୍ର ପଞ୍ଜିକାଟି ମଧ୍ୟ ରହିଛି । ବେଳେବେଳେ ଗାଳି ମନ୍ଦ ଖାଇଲେ ମଧ୍ୟ କିଛି ନ ଶୁଣିଲା ପରି ରହି ନିଜ ମାନସମ୍ମାନକୁ ଜଗିବାକୁ ପଡିଥାଏ । ଏ ସବୁ ସତ୍ତ୍ୱେ ବାବୁଙ୍କର ଦୌରାମ୍ତ୍ୟ କମିବାର ନାଁ ନଧରି ବଢ଼ି ବଢ଼ି ଚାଲେ ।

ଛୁଞ୍ଚିମୁହାଁମାନେ ନିଜର ସୂକ୍ଷ୍ମ ବୁଦ୍ଧି ବଳରେ ସର୍ବଦା ସମାଜରେ ହଇଚଇ ସୃଷ୍ଟି କରନ୍ତି । କାହାକୁ ନିଜ ଦଳରେ ସାମିଲ୍ କରିବେ, କାହାକୁ ହଇରାଣ କରିବେ, ତାହା ସେମାନେ ଯୋଜନାବଦ୍ଧ ଭାବରେ ସ୍ଥିର କରନ୍ତି । ସେଥିପାଇଁ ବିଭିନ୍ନ ଦଳ, ସଂଗଠନ, ସଭାସମିତି, କେତେ କ'ଣ ଗଠନ କରନ୍ତି । କେତେବେଳେ ଛଳନାରେ ଅନ୍ୟ ପାଇଁ ଲୁହ ଗଡାନ୍ତି ତ ଆଉ କେତେବେଳେ କାହାକୁ ତଳିତଳାନ୍ତ କରି ପାରନ୍ତି । ଯେ କୌଣସି ଘଟଣାକୁ ମୁଖ୍ୟ ଘଟଣାରେ ପରିଣତ କରିବାରେ ସେମାନେ ଧୂରନ୍ଧର । ସେମାନଙ୍କ ପ୍ରରୋଚନାରେ ଅଫିସ୍‌ରେ ହରତାଳ, କାରଖାନାରେ ତାଲାବନ୍ଦ ଆଦି କେତେ କ'ଣ ଘଟଣା ଘଟିଯାଏ । ମେଣ୍ଢା ପ୍ରକୃତିକୁ ଆପଣେଇ ନେଇ ସମସ୍ତେ ତାଙ୍କ କଥାରେ ଭାସି ଯାଆନ୍ତି । କିନ୍ତୁ, ଦେଖିଲା ବେଳକୁ ଲାଭ ହୁଏ ଛୁଞ୍ଚିମୁହାଁ ମାନଙ୍କର -ସେମାନେ ପ୍ରମୋଶନ ପାଆନ୍ତି- ଟଙ୍କା ପଇସାରେ ସେମାନଙ୍କ ପକେଟ ଗରମ ହୁଏ । ତା ସହିତ ଉଚ୍ଚ ଅଧିକାରୀଙ୍କ ପାଖ ଲୋକ ଭାବେ ସେମାନେ ସମସ୍ତ ସୁବିଧା ସୁଯୋଗ ହାସଲ କରନ୍ତି ।

ବାରମାସୀ ଚଢ଼େଇ ପରି ସେମାନେ ରଙ୍ଗ ବଦଳେଇ ପାରନ୍ତି । ଏ ଘର ମାଉସୀ, ସେ ଘର ପିଉସୀ ଦାୟିତ୍ୱଟିକୁ ଅତି ସୁନ୍ଦର ଭାବରେ ତୁଲେଇ ପାରନ୍ତି । ନିଜର ପାରିବାପଣିଆ ବଳରେ କାହାକୁ ପରୀକ୍ଷାରେ ପାଶ୍ କରାଇ ଦିଅନ୍ତି ତ କାହାକୁ ଚାକିରୀ ଜୁଟେଇ ଦିଅନ୍ତି । ଫଳରେ କରିତ୍‌କର୍ମା ଭାବେ ଘର, ଗାଡ଼ି, ବ୍ୟାଙ୍କ୍ ବାଲାନସ୍, ବିଳାସ ବ୍ୟସନ ସବୁ କିଛି ଆୟତ୍ତ କରିବାରେ ସେମାନେ ସଫଳତା ଲାଭ କରନ୍ତି ।

ସାଂପ୍ରତିକ ସମୟରେ ମଣିଷର ମାପକାଠି ଚରିତ୍ର ବଦଳରେ ଧନ ସମ୍ପତ୍ତିରେ ମପା ଯାଉଛି । ଅସତ୍ ଉପାୟରେ ଧନ ଉପାର୍ଜନ ପାଇଁ ସୁଯୋଗ ସୃଷ୍ଟି କରାଯାଉଛି । ପାରିବା ପଣର ତାରିଫ୍ କରାଯାଇ କପଟାଚାରୀକୁ ସମ୍ମାନ ଦିଆଯାଉଛି-ଫଳରେ ଆଦର୍ଶ ଚ଼ରିତ୍ରମାନେ ସବୁ କଥାରେ ପଛରେ ପଡ଼ି ଯାଉଛନ୍ତି । କାରଣ ସମୟ ସହିତ ତାଳ ଦେଇ ମଣିଷ ଓ ସେମାନଙ୍କ ଚିନ୍ତାଧାରା ବଦଳି ଯାଉଛି । ଦୋଷୀ ବଦଳରେ ନିର୍ଦ୍ଦୋଷ ଦଣ୍ଡ ପାଉଛି ।

ଆଇନ୍ ଆଜି ତା ବାଟରେ ଆଉ କପଟ ନୀତି ତା ବାଟରେ ଆଗେଇ ଚାଲିଛି । ପେଞ୍ଚ ମୋଡ଼ି ପାରୁଥିବା ମଣିଷଟିର ଆଜି ସମ୍ମାନ ଓ କାଟ୍ତି ବେଶୀ । ନିଜର ସୁଖ ସୁବିଧା ଦେଖିବା ଓ ନିଜକୁ ସୁରକ୍ଷିତ ରଖିବାଟା ବି ଖରାପ କଥା ନୁହେଁ । ଯୁଗ ବଦଳିବା ସହିତ ଭୀମ ଭୋଇଙ୍କର ପୁରୁଣା ନୀତିକୁ ଛୁଞ୍ଚମୁହାଁମାନେ ବଦଳାଇ ଦେଇ କହିଲେଣି-

''ସାରା ସଂସାରଟା ଦୁଃଖ ଯନ୍ତ୍ରଣାରେ
ନରକକୁ ପଛେ ଯାଉ,
ବିଳାସ ବ୍ୟସନ ସରଗର ସୁଖ
ସଦା ମୋତେ ମିଳୁଥାଉ ।''

କପଟ ଆଚରଣରେ ଯଦି ଏତେ ସୁଖ ସୁବିଧା ମିଳୁଛି, ତା ସପକ୍ଷରେ ଯିବା ପାଇଁ କ'ଣ ଆମର ନୀତି ଓ ଆଦର୍ଶକୁ ଆମେ ବଳି ଦେଇ ପାରିବା? ଭଲ ମନ୍ଦ ବିଚାର କରିବାର ଦାୟିତ୍ୱ ମୁଁ ଆପଣମାନଙ୍କ ଉପରେ ନ୍ୟସ୍ତ କରୁଛି । ଆପଣମାନେ ବୁଦ୍ଧିମାନ, ଜ୍ଞାନୀ ଓ ଗୁଣୀ । ତେଣୁ, ସବୁବେଳେ ''ବୁଝି ବିଚାରି କାର୍ଯ୍ୟ କଲେ, ପ୍ରମାଦ ନ ପଡ଼ଇ ଭଲେ '' ନୀତି ବାକ୍ୟଟିକୁ ମନେ ରଖି କାର୍ଯ୍ୟ କରିବେ ବୋଲି ଆଶା କରୁଛି ।



# ତୁଣ୍ଡ ବାଇଦ

ସଂସାରର ଲୀଳା ବଡ଼ ବିଚିତ୍ର-କେଉଁଠି କେତେବେଳେ କ'ଣ ଯେ ଘଟେ ତାହା ଆମେ କେହି ଜାଣି ପାରୁନା । ପୁଣି, ମଣିଷମାନଙ୍କର କଥା ଆହୁରି ନିଆରା । କେଉଁ ମଣିଷ ମନରେ କ'ଣ ଅଛି ସେ କଥା ଏକାନ୍ତ ଆତ୍ମୀୟ ମଣିଷ ବି ପରଖି ପାରେନା । ସେଥିପାଇଁ କୁହାଯାଇଛି-''ନର ମାୟା ନାରାୟଣଙ୍କୁ ଅଗୋଚର ।'' ଭଗବାନଙ୍କ ସୃଷ୍ଟିରେ ମଣିଷ ଶ୍ରେଷ୍ଠ ପ୍ରାଣୀ ଭାବେ ସ୍ୱୀକୃତି ଲାଭ କରିଛି । କାରଣ, ତାର କଥା କହିବା ସହିତ ବିଚାର କରିବାର ଶକ୍ତି ଅଛି । ନିଜର ବୁଦ୍ଧି ଖଟାଇ ମଣିଷ ସମସ୍ତ ଅସମ୍ଭବକୁ ସମ୍ଭବ କରିପାରେ । ମଧୁର କଥା କହି ବା ସୁଲଳିତ କଣ୍ଠରେ ଗୀତ ଗାଇ ଅନ୍ୟମାନଙ୍କୁ ନିଜ ପ୍ରତି ଆକୃଷ୍ଟ କରି ପାରେ । ପୁଣି, କେତେକଙ୍କ କଥା ଶୁଣି, ଅନ୍ୟମାନେ ତାକୁ ଛି ଛାକର କରିବା ସହିତ ଗାଳିଗୁଲଜ କରନ୍ତି । ସେଥିପାଇଁ ପରା କୁହାଯାଇଛି 'ତୁଣ୍ଡ କରେ ଲଣ୍ଡ ଭଣ୍ଡ ।' ବୁଝି ବିଚାରି କଥା ନ କହିଲେ, ବେଳେବେଳେ ମଣିଷକୁ ଅନେକ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼େ ।

ଅନ୍ୟ ପକ୍ଷରେ ଏହି ତୁଣ୍ଡ ବା ପାଟି ଦ୍ୱାରା ଗୋଟିଏ ଘଟଣା ଏପରି ପ୍ରଚାରିତ ହୁଏ ଯେ, ତାହା କୌଣସି ଡାକବାଜି ଯନ୍ତ୍ର ଦ୍ୱାରା ମଧ୍ୟ ହୋଇ ପାରିବ ନାହିଁ । ସେଥିପାଇଁ ବୋଧେ ତୁଣ୍ଡକୁ ବାଇଦ ସହିତ ତୁଳନା କରାଯାଇଛି । ସମୟ ଥିଲା-ଗାଆଁକୁ ଭାଲୁ ନାଚ, ମାଙ୍କଡ଼ ନାଚ, ସାପୁଆ କେଳା କି ବାଉଁଶରାଣୀ ଆଦି ଖେଳ ଆସୁଥିଲା ବେଳେ ଡିବି ଡିବି ହୋଇ ଡମ୍ବରୁ ବାଜୁଥିଲା । କ'ଣ ଗୋଟାଏ ଆସିଛି ବୋଲି ଲୋକେ ତାଟି କବାଟ ଖୋଲି ଧାଇଁ ଆସୁଥିଲେ-ମନ ଖୁସି ପାଇଁ ନାଚ ଦେଖୁଥିଲେ-ଘରୁ ଧାନ, ଚାଉଳ ବା ପଇସା ଆଣି ଦେଉଥିଲେ । ନାଚ ଦେଖାଇବା ବାଲା ଖୁସି ହୋଇ ପୁଣି ଡମ୍ବରୁ ବଜାଇ ବଜାଇ ଚାଲି ଯାଉଥିଲା । କିନ୍ତୁ, ଆଜି କାଲି କ'ଣ ଆଉ ସେ ସମୟ ଅଛି ? ଯୁଗ ବଦଳି ଗଲାଣି-ରୁଚି ପରିବର୍ତ୍ତନ ହେଲାଣି । ଆଜି ସମସ୍ତଙ୍କ ଘରେ ରେଡ଼ିଓ, କମ୍ପ୍ୟୁଟର, ଟେଲିଭିଜନ, ଭି.ସି.ଆର୍ । ସୁଇଚ୍ ଚିପି ଦେଲେ ନାଚ, ଗୀତ, ତାମସା ଯାହାକୁ ଯେତେ । ଘରେ ବସିତ ସବୁ ପ୍ରକାର ବାଜା ଓ ଗୀତ ଶୁଣି ହେଉଛି-ଆଉ ବାହାରକୁ ଯାଉଛି କିଏ? ମୋବାଇଲ୍‌ରେ ଇନ୍‌ଟରନେଟ ସୁବିଧା ଥିଲେ ନାଚ ଗୀତ

ଚିତ୍ର, ସିନେମା ସବୁ ଲୋକଙ୍କ ହାତମୁଠାରେ । ସେଠି ସେ କାହିଁକି ଆଉ ଖରାତରାରେ ଠିଆ ହୋଇ ମନଖୁସି ପାଇଁ ନାଚ ତାମସା ଦେଖିବ?

ଆଗ କାଳରେ ନାଚ ଗୀତ ଯାନି ଯାତରା ସମୟରେ କେତେ ପ୍ରକାର ବାଜା ବାଜୁଥିଲା-ସେ ଭିତରେ ଯୋଡ଼ି ନାଗରା, ଢ଼ୋଲ, ଘୁମୁରା, ମାଦଳ ଆଦି କେତେ କ'ଣ । ଏବେକୁ ମୃଦଙ୍ଗ, ଡୁବି ତାବଲା, ଚାଙ୍ଗୁ, ଟ୍ରାଙ୍ଗୁ, ଡ୍ରମ ଆଦି କେତେ ପ୍ରକାର ନୂଆ ନୂଆ ବାଜା ବାଜୁଛି । ନାଚଗୀତ ସାଙ୍ଗକୁ ବାଜା ବାଜିଲେ ତାର ପରିବେଶ ଅଲଗା-ନ ନାଚିଲା ଲୋକ ବି, ମୁଣ୍ଡ ହଲାଇ ତାଳ ଧରିବ । ବାହାଘର ବେଳେ ଯୋଡ଼ି ନାଗରା ମହୁରୀ ଶୁଣି କିଏବା ଆକର୍ଷିତ ନହେବ କହିଲେ ?

ପୂର୍ବେ ରାଜା ମହାରାଜା ବିଜେ କଲାବେଳେ କେତେ ପ୍ରକାର ବାଜା ବାଜୁଥିଲା କିମ୍ୱା ରାଜାଙ୍କର କୌଣସି ଖବର ଅନ୍ତର ବା ନୀତିନିୟମ ପ୍ରଜାଙ୍କ ନିକଟରେ ପହଞ୍ଚାଇବାକୁ ଥିଲେ କଟୁଆଳ ନାଗରା ବଜାଇ ଲୋକମାନଙ୍କୁ ଏକଜୁଟ କରୁଥିଲା-ଲୋକମାନେ ଏକଜୁଟ ହେଲା ପରେ କଟୁଆଳ ରାଜାଙ୍କ ସନ୍ଦେଶ ପ୍ରଜାଙ୍କ ନିକଟରେ ପ୍ରକାଶ କରୁଥିଲା । କିନ୍ତୁ, ଆଜି ଖବର କାଗଜ, ରେଡ଼ିଓ, ଟେଲିଭିଜନ ମାଧ୍ୟମରେ ଘରେ ବସି ଆମେ ସବୁ ଖବର ଜାଣି ପାରୁଛୁ । ତେଣୁ, ଆଜିର ଇଲୋକ୍‌ଟ୍ରୋନିକସ୍ ଯୁଗରେ ବାଦ୍ୟ ତାର ପାରମ୍ପରିକ ମୂଲ୍ୟ ନିଶ୍ଚୟ ହରାଇ ବସିଛି ।

ଆପଣମାନେ ଭାବୁଥିବେ ମୁଁ କ'ଣ ଅସଲ କଥା ନକହି ବାଦ୍ୟ ଉପରେ ଲମ୍ୱା ଚଉଡ଼ା ଭାଷଣ ଦେଲିଣି ବୋଲି । ଛାଡ଼ନ୍ତୁ ଆଜ୍ଞା କହିଦେଲା କଥା ଆଉ ବହିଗଲା ପାଣିକୁ କ'ଣ ଆଉ ଫେରେଇ ହେବ ? ଏବେ ଅସଲ କଥାଟିକୁ ଯିବା ଆସନ୍ତୁ-ମୁଁ ଆପଣଙ୍କୁ 'ତୁଣ୍ଡ ବାଇଦ' କଥା ହିଁ କହିବି । ମୋ କଥା ଶୁଣି, ଆପଣ ନିଶ୍ଚୟ ଭାବୁଥିବେ -ବାଇଦ ତ ବାଇଦ, ପୁଣି ତୁଣ୍ଡ ବାଇଦ ଗୋଟାଏ କ'ଣ ? ଏହି, ତୁଣ୍ଡ ବାଇଦର ଶବ୍ଦ ବେଶୀ ବୋଲିବି ଆପଣ ନିଶ୍ଚୟ ଭାବୁଥିବେ-କିନ୍ତୁ,ସେ କଥା ଆଦୌ ସତ ନୁହେଁ । ବେଶି ଯୋର୍‌ରେ ନ ଶୁଭଲେ ବି ଏହି ତୁଣ୍ଡ ବାଇଦ ଦ୍ୱାରା ଗୋଟିଏ କଥା ଏତେ ଦୂରକୁ ପ୍ରଚାରିତ ଓ ପ୍ରସାରିତ ହୋଇଯାଏ ଯେ, ଆମର ପାରମ୍ପରିକ ବାଦ୍ୟ ତାହା କରିପାରେ ନାହିଁ । ନାଗରାଟିଏ ବଜାଇଲେ ତାହା ଅଧମାଇଲ ଯାଏ ଶୁଭିବ କି ନାହିଁ ସନ୍ଦେହ । କିନ୍ତୁ, ଏହି ତୁଣ୍ଡ ବାଇଦ ମାଧ୍ୟମରେ ଅର୍ଥାତ୍ ଜଣକର ମୁହଁରୁ ଆଉ ଜଣକର ମୁହଁକୁ ଯାଇ ଘଟଣାଟିଏ ବହୁଦୂର ଯାଏ ପ୍ରଚାରିତ ହୋଇଯାଏ । ସେଥିପାଇଁ ପରା କୁହାଯାଇଛି-

'' ଚମ ବାଇଦ କୋଶେ, ତୁଣ୍ଡ ବାଇଦ ସହସ୍ର କୋଶେ ।''

ଏହି ତୁଣ୍ଡ ବାଇଦ ମାଧ୍ୟମରେ ଗୋଟିଏ ଭଲ ତଥା ଗୁରୁତ୍ୱପୂର୍ଣ୍ଣ କଥା ଯେତେ ଶିଘ୍ର ପ୍ରଚାରିତ ନ ହୁଏ-ଖରାପ ତଥା ମୂଲ୍ୟହୀନ କଥାଟିଏ ସେତେ ଶିଘ୍ର ସେତେ'ଅଧିକ ଦୂରଯାଏ ପ୍ରଚାରିତ ହୋଇଯାଏ - ଏହାକୁ କୁହନ୍ତି ଗୁଜବ-ଏହାର କାରଣ କ'ଣ ଜାଣନ୍ତି

-ଆମର ସବୁ କଥାକୁ ସହଜରେ ବିଶ୍ୱାସ କରିବାର ପ୍ରବୃତ୍ତି । କ'ଣ ମିଛ କହିଲି-ଏହି ତୁଣ୍ଡ ବାଇଦ ବା ଗୁଜବ ସଂପର୍କରେ ଏକ ବହୁ ଚର୍ଚ୍ଚିତ ଗପ ପ୍ରଚଳିତ । ଗପଟି ଶୁଣିଲେ ମୋ କଥାର ଗୁରୁତ୍ୱ ଆପଣମାନେ ଆପେ ଆପେ ଉପଲବ୍ଧି କରି ପାରିବେ । ତେବେ ଆସନ୍ତୁ ଗପଟିକୁ ଶୁଣିବା-''ଥରେ ଗୋଟିଏ ଧୋବା ରାଜାଙ୍କ ନଅର ପାଖରେ ବସି କାନ୍ଦୁଥିଲା । ଏହା ଦେଖି ବାଟୋଇଟିଏ ପଚାରିଲା,-''ତୁ କାହିଁକି ଏଠି ବସି ଏମିତି କାନ୍ଦୁଛୁ ।'' ଉତ୍ତରରେ ଧୋବାଟି କହିଲା-''ବୁଦ୍ଧିଆ ମରିଗଲା ବୋଲି ମୁଁ କାନ୍ଦୁଛି ।'' ଲୋକଟି ଏହା ଶୁଣି ବୁଧିଆ କିଏ ? କ'ଣ କରୁଥିଲା ? ସେ କଥା ନବୁଝି, ଧୋବାଟିକୁ ସମବେଦନା ଜଣାଇ ନିଜେ ମଧ୍ୟ ବୁଦ୍ଧିଆ ମରିଗଲା ବୋଲି କହି କାନ୍ଦିବାକୁ ଆରମ୍ଭ କଲା । ଏହା ପରେ ଯେଉଁମାନେ ଏ କଥା ଶୁଣିଲେ ସେମାନେ ମଧ୍ୟ ବୁଦ୍ଧିଆ ମରିଗଲା ବୋଲି କହି କାନ୍ଦିବାକୁ ଲାଗିଲେ । କ୍ରମେ କଥାଟି ରାଜନଅରର ଗୋଟିଏ ଦାସୀ ଶୁଣିଲା । ଦାସୀଟି ମଧ୍ୟ କାନ୍ଦି କାନ୍ଦି ବୁଦ୍ଧିଆ ମରିଗଲା କହି କଥାଟିକୁ ରାଜବାଟୀ ସାରା ପ୍ରଚାର କଲା । ଫଳରେ ବୁଦ୍ଧିଆ ସମ୍ପର୍କରେ କିଛି ନଜାଣି ମଧ୍ୟ ରାଜବାଟୀର ଦାସଦାସୀ ଠାରୁ ଆରମ୍ଭ କରି କଟୁଆଳ ସେନାପତି ତଥା ପାତ୍ରମନ୍ତ୍ରୀ ଯାଏଁ ସମସ୍ତେ କାନ୍ଦିବାକୁ ଲାଗିଲେ । କ୍ରମେ, କଥାଟି ରାଜାଙ୍କ କାନରେ ପଡ଼ିଲା । ଏହା ଶୁଣି ରାଜା ପ୍ରଥମେ ଦୁଃଖ ପ୍ରକାଶ କଲେ-ହେଲେ ତାଙ୍କ ମନରେ ଏକ ପ୍ରଶ୍ନ ଜାଗିଲା । ସେଇଠୁ ରାଜା ପାତ୍ରମନ୍ତ୍ରୀଙ୍କୁ ଡାକି ପଚାରିଲେ, ଯେଉଁ ବୁଦ୍ଧିଆ ମରିଗଲା ସିଏ କିଏ ? ରାଜାଙ୍କ ପ୍ରଶ୍ନରେ ମନ୍ତ୍ରୀଙ୍କର ଚେତା ପଶିଲା-ଫଳରେ ମନ୍ତ୍ରୀ ଘଟଣାଟିର ସତ୍ୟାସତ୍ୟ ଅନୁସନ୍ଧାନ କରିବାକୁ ବାହାରିଲେ-ଯାହାକୁ ପଚାରିଲେ କେହି ସଠିକ୍ ଉତ୍ତର ଦେଇ ପାରିଲେ ନାହିଁ । ଶେଷରେ ଖୋଳ ପର୍ବତ ମାର ମୂଷା ନ୍ୟାୟରେ ମନ୍ତ୍ରୀ ଜଣ ଜଣ କରି ପଚାରି ଘଟଣାର ଅନୁସନ୍ଧାନ କଲେ ଓ ଶେଷରେ ଧୋବାଟି ନିକଟରେ ପହଞ୍ଚି ଜାଣିଲେ ଯେ-ବୁଦ୍ଧିଆ ହେଉଛି ଧୋବାର ଗଧର ନାଁ । ଗଧଟି ରାଜବାଟୀରୁ ଲୁଗା ନବା ଆଣିବାରେ ତାକୁ ସାହାଯ୍ୟ କରୁଥିଲା । ଏବେ ଗଧଟି ମରିଯିବାରୁ, କିପରି ରାଜବାଟୀକୁ ଲୁଗା ବୋହି କରି ନେବ, ସେଇ ଚିନ୍ତାରେ ସେ ବସି କାନ୍ଦୁଥିଲା । ଧୋବା ମୁହଁରୁ ପ୍ରକୃତ ଘଟଣା ଶୁଣି ମନ୍ତ୍ରୀ ନିଜେ ଲଜ୍ଜିତ ହେଲେ ଓ ରାଜାଙ୍କୁ ପ୍ରକୃତ ଘଟଣାଟି କହିଲେ ।

ଶୁଣିଲେ ତ ତୁଣ୍ଡବାଇଦର କରାମତି । ପ୍ରକୃତ ଘଟଣାର ସତ୍ୟାସତ୍ୟ ନ ଜାଣି କେଉଁଟା ଭୁଲ, କେଉଁଟା ଠିକ୍ ତାହା ବିଚାର ନକରି ଆମେ କଥାଟିକୁ କେତେ ସହଜରେ ବିଶ୍ୱାସ କରୁ ଓ ସେହି କଥାକୁ ଅନ୍ୟମାନଙ୍କ ଆଗରେ ପ୍ରକାଶ କରୁ । ଏମିତି ଏମିତି ଘଟଣାଟି ଚାରିଆଡ଼େ ରାଷ୍ଟ୍ର ହୋଇଯାଏ । ମାତ୍ର, ଏଥିରେ କେତେ ଲାଭ, କେତେ କ୍ଷତି ସେ କଥାକୁ ବିଚାର କରୁଛି କିଏ ? ଅନୁସନ୍ଧାନ କରି ପ୍ରକୃତ ଘଟଣାଟି ଜାଣିଲା ବେଳକୁ ନେଡ଼ି ଗୁଡ଼ କହୁଣୀକୁ ବୋହି ସାରିଥାଏ । ଘଟଣାଟି ଜଣାପଡ଼ିଲା ପରେ ସମସ୍ତେ ଲଜ୍ଜିତ ହୁଅନ୍ତି । ନିଜକୁ ଅପମାନିତ ମନେ କରନ୍ତି । ଏମିତି କାହିଁକି ହୁଏ କହିଲେ?-ଇଏ ହେଉଛି

ଲୋକ ଚରିତ୍ର-ଆମମାନଙ୍କର ରୁଚିବୋଧ-ଅଇଲି ଗଲି ଯାହା ଶୁଣିଲି ତାହା କହିଲି ନ୍ୟାୟରେ ଆମେ ସବୁ କଥାକୁ କେବଳ ଶୁଣି ପ୍ରଚାର କରୁ-ନୂଆ ଘଟଣାଟିଏ କହୁଛୁ ବୋଲି ବାହାବା ନେଉ-ଏହି ଗୁଜବ ପ୍ରଚାର ମୂଳରେ ରହିଛି ଆମ ସମସ୍ତଙ୍କର ଅନ୍ୟ ପ୍ରତି ଅସହିଷ୍ଣୁ ମନୋଭାବ, ବିଚାର ଶକ୍ତିର ଅଭାବ ତଥା ଅନ୍ୟର ଶୁଣା କଥାକୁ ସତ୍ୟ ଭାବେ ଗ୍ରହଣ କରିବାର ପ୍ରବୃତ୍ତି । କ'ଣ ମିଛ କହୁଛି ବୋଲି ଭାବୁଛନ୍ତି କି ? ଜମା ନୁହେଁ ।

ବଡ ଲୋକମାନେ ପରା କହିଯାଇଛନ୍ତି-'ଦେଖିବ ଶୁଣିବ କହିବ ନାହିଁ, ଯାଚିଲା ଦରବ ଛାଡ଼ିବ ନାହିଁ ।' କିନ୍ତୁ, ସେ କଥାକୁ କିଏ ଶୁଣୁଛି କହିଲେ ? ଆମେତ ନିଜ ହାତରେ ନିଜେ ଚଉଦ ପା । ଏ ଶୁଖିଲା ଉପଦେଶରୁ ଆମକୁ କ'ଣ ମିଳିବ କହିଲେ ? ଶୁଣିଥିବା କଥାର ଆଗତ ଭବିଷ୍ୟତ ଚିନ୍ତା ନକରି, କିପରି ସେହି କଥାକୁ ଚଅଟ୍ କରି ଅନ୍ୟ ଆଗରେ କହିଦେଇ ବାହାବା ନେବା ସେଥିପାଇଁ ଆମେ ସମସ୍ତେ ବ୍ୟସ୍ତ ।

ଏହି ଗୁଜବର ଚେର ଏତେ ତଳକୁ ତଳକୁ ମାଡ଼ି ଯାଇଛି ଯେ ତାର ମୂଳୋତ୍ପାଟନ କରିବା ସେତେ ସହଜ ନୁହେଁ । ଏହି ଅଳ୍ପ ଦିନ ତଳର ଏକ ଘଟଣା ଆପଣ ସମସ୍ତଙ୍କର ମନେ ଥିବ । ଜଣେ ଜ୍ୟୋତିଷ ଖବର କାଗଜରେ ବାହାର କରିଦେଲେ ଯେ ୧୯୯୪ ମସିହା ମେ ମାସ ୧୬ ତାରିଖ ଦିନ ୧୧ ଘଟିକା ସମୟରେ ପୃଥିବୀ କକ୍ଷଚ୍ୟୁତ ହେବ -ଭୀଷଣ ବିସ୍ଫୋରଣ ଘଟି ସମସ୍ତେ ମୃତ୍ୟୁ ବରଣ କରିବେ । ଘଟଣାଟି କ୍ରମେ ରାଜ୍ୟ ସାରା ପ୍ରଚାର ହୋଇଗଲା । ଲୋକମାନେ ଆସନ୍ନ ମୃତ୍ୟୁ ପାଇଁ ଆତଙ୍କିତ ହୋଇ ଭୟରେ ପ୍ରମାଦ ଗଣିଲେ । କିଏ ଭୋଜିଭାତ କରି ମଉଜ ମଜଲିସ୍‌ରେ ଖାଇଲାତ, ଆଉ କିଏ ନିଜର ବନ୍ଧୁବାନ୍ଧବଙ୍କ ପାଖକୁ ଯାଇଁ ଶେଷ ଥର ପାଇଁ ଦେଖି ଆସିଲା । କିଏ ପୁଣି ମୂଲ୍ୟବାନ ବସ୍ତୁ ସବୁକୁ କମ୍ ମୂଲ୍ୟରେ ବିକ୍ରି କରିଦେଲା ତ ଆଉ କିଏ ନିଜର ଗୃହପାଳିତ ଛେଳି, କୁକୁଡ଼ା ଆଦିଙ୍କୁ କମ୍ ଦାମ୍‌ରେ ବିକ୍ରି କରିଦେଲା । ଲୋକମାନେ ଭାବିଲେ ଯେତେବେଳ ନିଜର ପ୍ରାଣ ରହିବ ନାହିଁ, ସେତେବେଳେ ଏ ସବୁ ଜିନିଷ ରହି କି ଲାଭ ?

କ୍ରମେ ନିର୍ଦ୍ଦିଷ୍ଟ ଦିନଟି ଆସି ଉପସ୍ଥିତ ହେଲା । ସେଦିନ ଆଉ କେହି ଘରୁ ପଦାକୁ ବାହାରିଲେ ନାହିଁ । ଲୋକମାନେ ବିଶ୍ୱାସ କଲେ ଯେ, ମରିବ ତ ଘର ଭିତରେ ମରିବ-ଏମିତି କାହିଁକି ବାହାରେ ହନ୍ତସନ୍ତ ହୋଇ ମରିବ । ମରିବା ପାଇଁ ସତରେ କେତେ ଲୋଭ- କେତେ ଯୋଜନା । କେହି ବୁଝିଲେ ନାହିଁ ଯେ-''ଆସିଛୁ ଏକା ଯିବୁ ଏକା, ସଙ୍ଗରେ ନଯିବେ ପିଲା ପିଚିକା''ର ଗୁରୁତ୍ୱକୁ । ଏମିତି ହେଲା ଯେ କଳାହାଣ୍ଡି ଜିଲ୍ଲାରେ ଗୋଟିଏ ଗୋଟିଏ ବସ ଖାଲି ଯିବାର ଦେଖାଗଲା-ଦୋକାନ ବଜାର ସବୁ ଫାଙ୍କା-କିଣା ବିକାବି ମାନ୍ଦା । ମରଣ ଭୟରେ ସମସ୍ତେ ଘରେ ଲୁଚି ରହିଲେ ।

ନିର୍ଦ୍ଧିଷ୍ଟ ଦିନ ନିର୍ଦ୍ଧିଷ୍ଟ ସମୟ ଆସି ଚାଲିଗଲା । କାରଣ ସମୟ କାହାକୁ ଅପେକ୍ଷା କରେ ନାହିଁ- ସେଦିନ ନା ପୃଥିବୀ କକ୍ଷଚ୍ୟୁତ ହେଲା, ନା ଲୋକେ ମୃତ୍ୟୁବରଣ କଲେ । ଲୋକମାନଙ୍କର ସନ୍ଦେହ ଦୂର ହେଲା ବେଳକୁ ନେଡ଼ିଗୁଡ଼ କହୁଣୀକୁ ବୋହି ସାରିଥିଲା-ଯେଉଁମାନେ କମ୍ ଦାମ୍‌ରେ ଛେଳି ମେଣ୍ଢା ଆଦି ବିକିଥିଲେ ସେମାନେ ଅନୁତାପ କଲେ-ଯେଉଁମାନେ ଆଉ ବଞ୍ଚିବେ ନାହିଁ ବୋଲି କେତେ କ'ଣ ଖର୍ଚ୍ଚ କରି ମଉଜ ମଜ୍‌ଲିସ୍ କରିଥିଲେ ସେମାନେ ପଶ୍ଚାତାପ କଲେ । ସେଥିପାଇଁ କୁହାଯାଇଛି -

''ବୁଝି ବିଚାରି କାର୍ଯ୍ୟ କଲେ  ପ୍ରମାଦ ନ ପଡ଼ଇ ଭଲେ ।''

ଏମିତିକା ଖବର ବର୍ଷେ ଦି ବର୍ଷରେ ଖବରକାଗଜରେ ବାରମ୍ବାର ପ୍ରକାଶ ପାଇଲେ ମଧ୍ଯ ଆମେ ସବୁବେଳେ ସେଇ କଥାକୁ ନବୁଝି ନଶୁଝି ସହଜରେ ବିଶ୍ୱାସ କରିଥାଉ ।

ଏହି ଗୁଜବ ଆରମ୍ଭ ହେବାର ମୂଳ କ୍ଷେତ୍ର କେଉଁଠି ଆପଣମାନେ ଜାଣନ୍ତି ? ଗାଁ ଗହଳି ଓ ସହର ବଜାରର 'ଚା' ଦୋକାନକୁ ଆପଣ ଲକ୍ଷ୍ୟ କରିଥିବେ-ସକାଳୁ ସକାଳୁ କପେ ଗରମାଗରମ ଚା ପିଇବା ପାଇଁ, ବାବୁମାନେ ଶେଯ ଛାଡ଼ି ଆସି ସେହି ଦୋକାନରେ ହାଜର ହୁଅନ୍ତି । ଆଉ ସେଠି ଢ଼େଙ୍କିଶାଳ ଠାରୁ ଢେଙ୍କାନାଳ ଯାଏ ସବୁ କଥା ପଡ଼େ । କିଏ କେଉଁଠି କ'ଣ ଶୁଣିଛି, ତାହା ସେଠି ବଖାଣି ବସେ । ସେଠି ଯେତେ ଗୁରୁତ୍ୱପୂର୍ଣ୍ଣ କଥା ଆଲୋଚନା ନ ହୁଏ, ତାଠାରୁ ଅଧିକ ମୂଲ୍ୟହୀନ କଥା ଆଲୋଚିତ ହୋଇଥାଏ । କା ଝିଅ କା' ପୁଅ ସଙ୍ଗରେ ପ୍ରେମ କରୁଛି-କା ସ୍ତ୍ରୀ ଅନ୍ୟ କେଉଁ ପୁରୁଷ ସଙ୍ଗରେ ପଳାଇଲା-କେଉଁ ଗାଁରେ ବର୍ଷକର ବାଛୁରୀ କ୍ଷୀରଦେଉଛି ବା କାହା ବାଡିରେ ପାଞ୍ଚ କିଲୋ ଓଜନର ଆମ୍ବ ଫଳିଛି ଇତ୍ୟାଦି ଇତ୍ୟାଦି ପ୍ରଚାରିତ ହୁଏ । ମୋଟାମୋଟି ପ୍ରେମ ଘଟଣା ଠାରୁ ଆରମ୍ଭ କରି ରାଜନୀତି ଓ ରଣ ନୀତି ଯାଏ ସବୁ କଥା ଆଲୋଚିତ ହୁଏ । ଚା ଖଟିରୁ ଫେରିବା ପରେ ବାବୁମାନେ ସେ କଥାର ସତ୍ୟାସତ୍ୟ ଅନୁସନ୍ଧାନ ନକରି, ନିଜର ପରିବାର ଲୋକଙ୍କ ଆଗରେ ବା ସାଙ୍ଗସାଥିଙ୍କ ଆଗରେ ଶୁଣିଥିବା କଥାକୁ ବଖାଣି ବସନ୍ତି । ତା ପରେ ଚାଲିଲା ଘଟଣାଟିର ପ୍ରଚାର-ତୁଣ୍ଡ ବାଇଦ ପରା- ଜଣକ ଠାରୁ ଆଉ ଜଣେ-ଏମିତି ଏମିତି କଥାଟି ପ୍ରଚାରିତ ହୋଇଯାଏ ।

ଚା ଖଟି ବ୍ୟତୀତ ଏହି ଗୁଜବର ମଞ୍ଜି ମାଇପି ମହଲରୁ ଆରମ୍ଭ ହୋଇ ସବୁଆଡେ ଅଧିକ ପ୍ରଚାରିତ ହୁଏ । ଆପଣ ଦେଖିଥିବେ କାମଦାମ ସାରି ଖରାବେଳେ କି ସଞ୍ଜ ବେଳେ ଚାରି ପାଞ୍ଚ ଜଣ ମାଇପେ, ଘର ଅଗଣାରେ କି କୂଅମୂଳେ ଏକାଠି ହୋଇଯାଆନ୍ତି-ସେଇଠି ଆରମ୍ଭ ହୋଇଯାଏ ଅସରନ୍ତି ଗପ-ଏହି ଅସରନ୍ତି ଗପରୁ ଆରମ୍ଭ ହୁଏ ଗୁଜବର ମଞ୍ଜି । ପର ଚର୍ଚ୍ଚା ନ ହେଲେ ଯେମିତି ସେମାନଙ୍କ ଭାତ ହଜମ ହୁଏ ନାହିଁ । ଏକରେ ତ ମାଇପି ବୁଦ୍ଧି ହେଉଛି ଅଳପ ବୁଦ୍ଧି-ସେମାନଙ୍କର ଆଗତ ଭବିଷ୍ୟତ

ଚିନ୍ତା କରିବାର ଶକ୍ତି ନଥାଏ -ଘରେ ନିଜ ସ୍ୱାମୀ ଶଶୁରଙ୍କ ଠାରୁ ଯେଉଁ ସବୁ କଥା ଶୁଣି ଥାଆନ୍ତି-ସେଇ କଥାକୁ ବଢ଼େଇ ଚଢ଼େଇ କରି କହି ତୁଚ୍ଛାଟାରେ ଅନର୍ଥ ସୃଷ୍ଟି କରନ୍ତି । ସାମାନ୍ୟ କଥାକୁ ଏପରି ପୁଟ ଦେଇ ସେମାନେ ବର୍ଣ୍ଣନା କରନ୍ତି ଯେ, ଶୁଣୁଥିବା ଲୋକ ତାକୁ ଗୋଟିପଣ ସତ ବୋଲି ମାନିନିଏ । ତା ପରେ ଗୁଜବ ଆକାରରେ ଏହା ଚାରିଆଡ଼କୁ ବ୍ୟାପିଯାଏ । ଗୋଟିଏ ଛୋଟିଆ ଉଦାହରଣ ଦେଖନ୍ତୁ-ମୋ କଥାର ସତ୍ୟତା ଆପଣ ଆପେ ଆପେ ବୁଝିଯିବେ ।

ରାମ ବାବୁ ଓ ଶାମ ବାବୁ ସହରର ଦୁଇ ଜଣ ପଡୋଶୀ । ପାଖାପାଖି ଦୁହିଁଙ୍କ ଘର । ଦୁହିଁଙ୍କ ଭିତରେ ଖୁବ୍ ଭଲ ସମ୍ପର୍କ । ପରସ୍ପର ମଧ୍ୟରେ ଦବାନବା ଠାରୁ ଆରମ୍ଭ କରି, ଉଭୟ ଉଭୟଙ୍କ ଆପଦ ବିପଦରେ ସାହାଯ୍ୟ ସହଯୋଗ କରନ୍ତି । ଦୁହିଁଙ୍କର ଏହି ମିଳାମିଶାକୁ ସେମାନଙ୍କର ଅନ୍ୟ ଜଣେ ପଡୋଶୀ ଯଦୁବାବୁଙ୍କ ସ୍ତ୍ରୀ ଜମା ସହି ପାରନ୍ତି ନାହିଁ-କାରଣ କ'ଣ ଜାଣନ୍ତି -ମଣିଷର ପ୍ରକୃତି-ଯଦୁ ବାବୁଙ୍କ ସ୍ତ୍ରୀ ହେଉଛନ୍ତି ଖଳ ପ୍ରକୃତିର ସ୍ତ୍ରୀ ଲୋକ । ଏ ଘର ମାଉସୀ ସେ ଘର ପିଉସୀ ଭୂମିକାଟିକୁ ଖୁବ୍ ଭଲ ଭାବରେ ତୁଲାଇ, ନାଟ ଦେଖିବାରେ ସେ ପାରଙ୍ଗମ । କିପରି ରାମ ବାବୁ ଓ ଶାମ ବାବୁଙ୍କ ପରିବାରକୁ ଅପମାନିତ କରି ଲୋକହସା କରିବେ ସେଇ ଚିନ୍ତାରେ ସେ ଥାଆନ୍ତି । ତାଙ୍କ ଚାହିଁବାକୁ ଏହି ସୁଯୋଗ ବି ତାଙ୍କୁ ଥରେ ମିଳିଗଲା । ସେଥରକ ରାମବାବୁଙ୍କ ଝିଅ ମାଟ୍ରିକ୍ ପରୀକ୍ଷା ଦେଉଥିଲା ଓ ତାର ପରୀକ୍ଷା କେନ୍ଦ୍ର ବହୁ ଦୂର ଜାଗାରେ ପଡ଼ିଥିଲା । କେତେକ ଜରୁରୀ କାମ ପାଇଁ ରାମ ବାବୁଙ୍କ ପରିବାରର କେହି ଝିଅ ସାଙ୍ଗରେ ଯାଇ ନପାରି ଶାମ ବାବୁଙ୍କ ପୁଅକୁ ଝିଅ ସାଙ୍ଗରେ ପଠାଇଲେ । ଏଥିରେ ଯଦୁବାବୁଙ୍କ ସ୍ତ୍ରୀକୁ ସୁଯୋଗଟିଏ ମିଳିଗଲା-ସେ ଏହାର ସୁଯୋଗ ନେଇ ସଙ୍ଗେସଙ୍ଗେ ସେଦିନ ମାଇପି ମହଲରେ ପ୍ରଚାର କରିଦେଲେ ଯେ ରାମ ବାବୁଙ୍କ ଝିଅକୁ ଶାମ ବାବୁଙ୍କ ପୁଅ କେଉଁଆଡେ ନେଇ ପଳାଇ ଯାଇଛି ।

ଯୋଗକୁ ତ ସେମାନେ ଘରେ ଅନୁପସ୍ଥିତ-କୁଆ ଉଡ଼ିବାକୁ ତାଳ ପଡ଼ିବାକୁ, ଯଦୁବାବୁଙ୍କ ସ୍ତ୍ରୀଙ୍କ କଥାକୁ ସମସ୍ତେ ବିଶ୍ୱାସ କରିଗଲେ । କଥାଟି କ୍ରମେ କଲୋନୀ ସାରା ପ୍ରଘଟ ହୋଇ ସହର ସାରା ରାଷ୍ଟ୍ର ହୋଇଗଲା । କେହିବି କଥାଟିର ସତ୍ୟାସତ୍ୟ ବୁଝିବାକୁ ଚେଷ୍ଟା କଲେ ନାହିଁ । ଯେତେବେଳେ କଥାଟି ରାମବାବୁ ଓ ଶାମ ବାବୁଙ୍କ କାନକୁ ଗଲା ସେମାନେ ଆଶ୍ଚର୍ଯ୍ୟ ହେଲେ-ଚିହ୍ନା ପରିଚୟ ଲୋକମାନଙ୍କୁ ଘଟଣାର ସତ୍ୟାସତ୍ୟ ବୁଝାଇଲେ । କିନ୍ତୁ , ହେଲା କ'ଣ ତୁଣ୍ଡ ବାଇଦ ବା ଗୁଜବକୁ ସେମାନଙ୍କର ଯେଉଁ ମାନମହତ ପଦାରେ ପଡ଼ିଲା, ତାହା କ'ଣ ସେମାନେ ଆଉ ଫେରି ପାଇଲେ ? ଏମିତି ଏମିତି ଗୁଜବର ମଞ୍ଜି ପାଉଁଶ ତଳର ନିଆଁ ପରି ଚାରିଆଡ଼େ ଖେଳେଇ ହୋଇଯାଏ ଓ ଆମମାନଙ୍କର ସରଳ ବିଶ୍ୱାସକୁ କ୍ଷତ ବିକ୍ଷତ କରେ ।

ଆଉ ଗୋଟିଏ କଥା ଦେଖନ୍ତୁ -କେଉଁଠି କେଉଁଠି ଭଣ୍ଡ ସନ୍ନ୍ୟାସୀମାନେ ଲୋକମାନଙ୍କୁ ପ୍ରଭାବିତ କରିବା ପାଇଁ, ନିଜର ଚେଲା ବା ଚାମଚାମାନଙ୍କ ଦ୍ୱାରା ଗୁଜବ ସୃଷ୍ଟି କରାନ୍ତି ଯେ, ସନ୍ନ୍ୟାସୀଙ୍କୁ ସନ୍ତୁଷ୍ଟ କଲେ ଭକ୍ତର ମନୋବାଞ୍ଛା ନିଶ୍ଚୟ ପୂର୍ଣ୍ଣ ହେବ । ବିଚରା ସରଳ ବିଶ୍ୱାସୀ ଜନସାଧାରଣ କଥାଟିକୁ ବିଶ୍ୱାସ କରି ଶହ ଶହ ସଂଖ୍ୟାରେ ଫଳମୂଳ, ଟଙ୍କାପଇସା ନେଇ ସନ୍ନ୍ୟାସୀଙ୍କୁ ପ୍ରସନ୍ନ କରିବାକୁ ଧାଆଁନ୍ତି । ତେଣେ ଲୋକଙ୍କ ମନରେ ବିଶ୍ୱାସ ଜନ୍ମାଇବା ପାଇଁ, ସନ୍ନ୍ୟାସୀ ନିଜ କମଣ୍ଡଳୁରେ ହାତ ପୁରାଇ କାହାକୁ ବିଭୁତି, କାହାକୁ ଧଣ୍ଡା ତ ଆଉ କାହାକୁ କମଳା ଲେମ୍ବୁ କି କଦଳୀ ପ୍ରଦାନ କରନ୍ତି । ବିଚରା ଅନ୍ଧବିଶ୍ୱାସୀ ଜନସାଧାରଣ ସେ ସବୁକୁ ଭକ୍ତି ସହକାରେ ଗ୍ରହଣ କରି ଭଣ୍ଡ ସନ୍ନ୍ୟାସୀଙ୍କୁ ଦାନଦକ୍ଷିଣା ଦେଇ ମାଲାମାଲ କରି ଦିଅନ୍ତି । କିନ୍ତୁ, ରାତି ପାହିଲା ବେଳକୁ ଦେଖାଯାଏ ସନ୍ନ୍ୟାସୀ ଓ ତାଙ୍କ ଚେଲା ଚାମଣ୍ଡା ଧରି କେଉଁଆଡ଼େ ଛ ହର୍ସଉକାର ଛୁ ମାରିଛନ୍ତି ।

କେଉଁଠି କେଉଁଠି ଠାକୁରଙ୍କ ଫଟରୁ ବିଭୁତି ଝଡ଼ିବା ଅବା କେଉଁଠି ମହୁ ଝରିବାର ଗୁଜବ ବି ଆପଣ ଶୁଣିଥିବେ-ଆଉ ତାକୁ ଦେଖିବା ପାଇଁ ଭକ୍ତମାନଙ୍କର ଲମ୍ବା ଲାଇନ୍ ଲାଗିଥିବା ବି ଆପଣ ଦେଖିଥିବେ । ଗଣେଶଙ୍କ କ୍ଷୀର ପାନ କଥା ଏହି ଅଳ୍ପ ଦିନ ତଳେ କିପରି ପ୍ରଚାରିତ ହୋଇଥିଲା, ତାହା ମଧ୍ୟ ଆପଣ ଜାଣିଥିବେ । ଆହୁରି ବି ଏହି ଗୁଜବ ଦ୍ୱାରା ପ୍ରଭାବିତ ହୋଇ କେଉଁଠି ପରସ୍ପର ଭିତରେ ହଣାକଟା ଠାରୁ ଆରମ୍ଭ କରି ଦଙ୍ଗା ଆଦି ଘଟଣା ଆପଣ ଶୁଣିଥିବେ ।

ଏହି ଗୁଜବ ପ୍ରଚାର ମୂଳରେ ହିଁ ଲୋକ ଚରିତ୍ର ଅଧିକ କାମ କରିଥାଏ । କାରଣ, କଥା କହିଲା ବେଳେ ଆଗତ ଭବିଷ୍ୟତ କଥା ଚିନ୍ତା ନକରି ଆମେ କ'ଣ ଗୋଟାଏ କହି ଦେଇଥାଉ-କିନ୍ତୁ, ସେଥିପାଇଁ ଯେ ଅନେକ ଅଘଟଣ ଘଟିଯାଏ, ସେ କଥା ଆମେ ଚିନ୍ତା କରି ପାରୁନା । ସେଥିପାଇଁ କୁହାଯାଇଛି-

''ଗୋଡ଼ ଖସିଗଲେ ଜଣେ ମରେ, ତୁଣ୍ଡ ଖସିଗଲେ ସହସ୍ର ମରନ୍ତି ।''

ଆମେ ଆଜି ଶିକ୍ଷିତ-ଆମର ବୁଦ୍ଧି ଅଛି, ଜ୍ଞାନ ଅଛି-ଭଗବାନଙ୍କ ସୃଷ୍ଟିରେ ଆମେ ଶ୍ରେଷ୍ଠ ଜୀବ । ଏଣୁ, କୌଣସି କଥା ବା ଘଟଣା ଶୁଣି ତାକୁ ପୁଣି ପ୍ରଚାର କରିବା ପୂର୍ବରୁ ଆମକୁ ତାର ସତ୍ୟାସତ୍ୟ ଜାଣିବା ଓ ବିଚାର କରିବାର ଆବଶ୍ୟକତା ରହିଛି । ତାହା ସହିତ ଆମର ଚାରିତ୍ରିକ ଗୁଣର ମଧ୍ୟ ପରିବର୍ତ୍ତନ କରିବା ଆବଶ୍ୟକ । ତେବେ ଯାଇଁ ଗୁଜବ ପ୍ରଚାରର ମୂଳୋତ୍ପାଟନ ହୋଇ ପାରିବ । ସୁଖର ସଂସାର ହସି ଉଠିବ । ଆମର ଏହି ଚାରିତ୍ରିକ ଗୁଣର ପରିବର୍ତ୍ତନ ପାଇଁ ଆମେ ସମସ୍ତେ ଯତ୍ନଶୀଳ ହେବା ଆବଶ୍ୟକ -ନଚେତ୍ ଆମର ସବୁ ଆଶା, ସବୁ ସ୍ୱପ୍ନ ଫସର ଫାଟିଯିବ । ଏଣୁ ବେଳହୁଁ ସାଧୁ ସାବଧାନ । ❑❑❑

# ନ ଦେଖିଲା ଓଉ

ବୁଦ୍ଧି, ଜ୍ଞାନ ଓ ବାକ୍‌ଶକ୍ତି ପାଇଁ ମଣିଷ ନିଜକୁ ଶ୍ରେଷ୍ଠ କହି ଧେଣ୍ଟୁରା ପିଟେ । ଅନୁସନ୍ଧାନ ଓ ପରୀକ୍ଷା ନିରୀକ୍ଷା କରି ନୂଆ ନୂଆ ଆବଶ୍ୟକୀୟ ଜିନିଷ ଆବିଷ୍କାର କରେ ବୋଲି ଆତ୍ମଗର୍ବରେ ଫାଟି ପଡ଼େ । କେତେକ ସିଆଣିଆ ମଣିଷ ଫମ୍ପା ଢ଼ୋଲର ଶବ୍ଦ ବେଶୀ ନୀତିକୁ ଆପଣେଇ ନେଇ ଇନ୍ଦ୍ରଚନ୍ଦ୍ର ମାନନ୍ତି ନାହିଁ । ଇନ୍ଦ୍ରିୟ ଲାଳସାର ବଶବର୍ତ୍ତୀ ହୋଇ ବେଳେବେଳେ ଆଉ କେତେକ ମଣିଷ ଏପରି ଅପ୍ରୀତିକର କାର୍ଯ୍ୟ କରି ବସନ୍ତି, ଯାହା ପଶୁମାନେ ମଧ କରିପାରିବେ ନାହିଁ । ଫଳରେ କେତେ ଜଣଙ୍କର ସାମାନ୍ୟ ଭୁଲ୍ ପାଇଁ ବାରବର୍ଷର ତପସ୍ୟା ଶୁଖୁଆ ଝୋଳରେ ଯିବା ହିଁ ସାର ହୁଏ ।

ଅନ୍ୟମାନଙ୍କ ନିକଟରେ ନିଜର ବାହାଦୁରୀ ଓ ଆତ୍ମବଡ଼ିମା ପ୍ରକାଶ କରିବା ପାଇଁ ମଣିଷମାନେ ନିଜର ଉର୍ବର ମସ୍ତିଷ୍କ ପ୍ରୟୋଗ କରି ସର୍ବଦା ଯୋଜନା ଉପରେ ଯୋଜନା ପ୍ରସ୍ତୁତ କରି ଚାଲିଛନ୍ତି । କିନ୍ତୁ , ନଈ ପାଣି ଗଲା ନାଆକୁ, କିଏ ପଚାରୁଛି କାହାକୁ-କାହା ପାଖରେ ଆଜି ସମୟ ଅଛି ଶୁଖିଲାଟାରେ ଅନ୍ୟର ଆତ୍ମ ବଡ଼ିମା ଶୁଣି ତାଳି ଉପରେ ତାଳି ମାରିବା ପାଇଁ । ନିଜ କଥା ଅନ୍ୟ ପାଖରେ ପହଁଞ୍ଚାଇବା ପାଇଁ ଖବର କାଗଜ, ରେଡ଼ିଓ, ଟେଲିଭିଜନ, ଇଣ୍ଟରନେଟ ଆଦି କେତେ କ'ଣ ମାଧ୍ୟମ ଆଜି କାମ କରୁଛି-ବିଜ୍ଞାପନ ସଂସ୍ଥାମାନେ ଖାସ୍ ଏଇଥି ପାଇଁ କାର୍ଯ୍ୟ କରୁଛନ୍ତି । କିନ୍ତୁ , କେତେକ ସିଆଣିଆ ମଣିଷ ଏ ସବୁ ମାଧ୍ୟମରେ ଆତ୍ମ ପ୍ରଚାର କରିବାକୁ ନାରାଜ-କାରଣ ଏ ଦିଗରେ ଆତ୍ମଦଡ଼ିମା ପ୍ରକାଶ କରିବାକୁ ହେଲେ ପକେଟରୁ ନଗଦ ନାରାୟଣ ଖର୍ଚ୍ଚ ହୋଇଯିବ-ମାଗଣାରେ କିପରି ନିଜର କଥାବାର୍ତ୍ତା, ଚାଲି ଚଳଣି, ବେଶ ଭୂଷା ଆଉ ଆତ୍ମବଡ଼ିମାର କଥା ପ୍ରକାଶ ପାଇବ ସେଥିପାଇଁ ସେମାନେ ଯତ୍ନଶୀଳ । ଏହି ପ୍ରକାରର ଲୋକମାନେ ସ୍ଥାନ, କାଳ ଓ ପାତ୍ର କଥା ଚିନ୍ତା ନକରି ନିଜର ଅଭିଜ୍ଞତା ଓ ଆତ୍ମବଡ଼ିମା ଅନ୍ୟକୁ ଶୁଣାଇବା ପାଇଁ ସର୍ବଦା ଚେଷ୍ଟା ଚଳାଇଥାନ୍ତି ।

ଏହାର କାରଣ କ'ଣ ଜାଣନ୍ତି-ମୁଁ ଯାହା ଜାଣିଛି, ଅନ୍ୟ କେହି ଜାଣି ନାହାନ୍ତି -ମୁଁ ଯାହା ଦେଖିଛି ଅନ୍ୟ କେହି ଦେଖି ନାହାନ୍ତି ବୋଲି ପ୍ରମାଣିତ କରିବା-ଇଏ ପରା

କାହାକୁ କହିବା

ଲୋକ ଚରିତ୍ର-ନିଜ ଚାରିତ୍ରିକ ପ୍ରବୃତ୍ତିକୁ ସେ ବା କିପରି ଛାଡ଼ି ପାରିବ । କଥାରେ ଅଛି -

''ଯାହାକୁ ଯାହା କରିଛି ଦଇବ
ତହୁଁ ନିକି ସେ ଅନ୍ୟଥା ହୋଇବ ।''

ନିଜ ଆତ୍ମବଡ଼ିମା ଓ ବଢ଼େଇଲା ପଣର ପ୍ରଚାର କରୁଥିବା ଲୋକମାନଙ୍କୁ ଲକ୍ଷ୍ୟ କରି କୁହାଯାଇଛି-'ନ ଦେଖିଲା ଓଉ ଛଫଡ଼ା'-କିହୋ ସମସ୍ତଙ୍କ ଜାଣିବାରେ ଓଉ ତ ପାଞ୍ଚ ଫଡ଼ା-ତମ ପାଇଁ କିପରି ଆଉ ଗୋଟିଏ ଫଡ଼ା ଅଧିକ ବଢ଼ିଗଲା ? ବ୍ୟସ୍ତ ହୁଅନ୍ତୁ ନାହିଁ ସେହି କଥା ମୁଁ ଏବେ କହୁଛି, ଆପଣମାନେ ମନ ଧ୍ୟାନ ଦେଇ ଶୁଣନ୍ତୁ ।

ଆଜିକାଲି କହିବା ଲୋକ ପଣ ପଣ-ପୂର୍ବେ ସିନା ଜାଣିବା ଶୁଣିବା ଆଉ ଅଭିଜ୍ଞ ଲୋକ କହୁଥିଲେ-ଏବେ କିନ୍ତୁ ଅନେକ କହୁଛନ୍ତି-ସେ କହିବା ଭିତରେ ନିଜର ଆତ୍ମବଡ଼ିମା ଓ ବଢ଼େଇଲା ପଣ ଆପଣଙ୍କୁ ଜଳ ଜଳ ହୋଇ ଦିଶିବ । ସେମାନେ ସତେ ଯେମିତି ସବ୍‌ଜାନତା ଆଦମୀ-ଢ଼େଙ୍କିଶାଳରୁ ଢ଼େଙ୍କାନାଳ ଯାଏ ବା ଛୁଞ୍ଚି ତିଆରି ଠାରୁ ଯୋତା ସିଲେଇ ଯାଏ ସବୁ କଥା ସିଏ ଜାଣିଛନ୍ତି ବୋଲି କହିବେ । ସେମାନଙ୍କର ଏ କଥା କିଏ ଶୁଣୁ କି ନଶୁଣୁ ସେଥିପାଇଁ ତାଙ୍କର ଚିନ୍ତା ନଥାଏ । ଏ ପ୍ରକାର ଲୋକମାନଙ୍କୁ ଆପଣ ଫୁଟାଣିଆ, ଗୁଲିଆ, ବାହାପିଆ, ଆଗତକୁହା ବା କୁହାମୁଣ୍ଡା କପିଳା ଆଦି ବିଭିନ୍ନ ନାମରେ ସମ୍ବୋଧନ କରନ୍ତି -କିନ୍ତୁ, ରସିକ ଓ ବିଜ୍ଞ ଲୋକେ ଏମାନଙ୍କ କଥା ଶୁଣି କୁହନ୍ତି-'ନ ଦେଖିଲା ଓଉ ଛଫଡ଼ା ।' ଏମାନଙ୍କ କଥା ଶୁଣୁ ଶୁଣୁ ସ୍ୱତଃ କାହାରି କାହାରି ପାଟିରୁ ବାହାରି ପଡ଼େ -'ନ ଦେଖିଲା ଲୋକ ଦେଖ, କଇଁଚ କାଢ଼ିଛି ବେକ ।'

ଏମାନଙ୍କୁ ଖୋଜିବା ପାଇଁ ଆପଣଙ୍କୁ ଆଦୌ ବେଶୀ ବାଟ ଯିବାକୁ ପଡ଼ିବ ନାହିଁ । ଏମାନେ ସର୍ବଦା ଆପଣଙ୍କ ଚାରି ପାଖରେ ଘୂରି ବୁଲନ୍ତି । ଆପଣଙ୍କର ଇଛା ଓ ଆଗ୍ରହ ନଥିଲେ ମଧ୍ୟ ନିଜ ଆତ୍ମବଡ଼ିମାର କାହାଣୀ ଶୁଣାଇ ସେମାନେ ବିରକ୍ତ କରାନ୍ତି । ସେମାନଙ୍କ ଚରିତ୍ରର ଅନ୍ୟ ଏକ ବିଶେଷତ୍ୱ ହେଉଛି ଯେ-ସେମାନେ ଅନ୍ୟମାନଙ୍କର ଖାଇବା, ପିଇବା, ପିନ୍ଧିବା ଓ ଯିବା ଆସିବା ଉପରେ ତୀକ୍ଷ୍ଣ ଦୃଷ୍ଟି ରଖନ୍ତି-ଅନ୍ୟମାନଙ୍କ ସହିତ ମିଶି ସେମାନଙ୍କ ଠାରୁ କଥା ସଂଗ୍ରହ କରି ଅନ୍ୟ ଆଗରେ ପ୍ରଚାର କରନ୍ତି ଓ ନିଜ ଜାଣିବା ପଣିଆର ବାହାଦୂରୀ ଦେଖାନ୍ତି । ଏ କଥା ଜାଣିଲେ ମଧ୍ୟ ଆପଣ ସେମାନଙ୍କ ମୁହଁରେ କିଛି କହି ପାରନ୍ତି ନାହିଁ । କାରଣ, ''ଆଲୋ ସଖୀ ଆପଣା ମହତ ଆପେ ରଖି'' ନୀତି ବାକ୍ୟଟିକୁ ଆପଣ ଭଲଭାବରେ ବୁଝିଛନ୍ତି ।

ଆପଣ ଯଦି ସେମାନଙ୍କ ଠାରୁ ଦୂରେଇ ରହିବାକୁ ଚାହିଁବେ, ତେବେ ବି ସେମାନେ ଛାଡ଼ିବେ ନାହିଁ-ଉପରେ ପଡ଼ି ଆପଣଙ୍କ ସହିତ ମିଶିବେ-ଗପ ଜମେଇବେ-ତା ପରେ ଆତ୍ମବଡ଼ିମା ପ୍ରକାଶ କରିବେ । କୁଆଡ଼େ ଯଦି ସେମାନଙ୍କର ଯିବାର ଥିବ, ତେବେ ବଡ଼ ପାଟିକରି ଘୋ ଘା କରି ଅନ୍ୟମାନଙ୍କୁ ଜଣେଇ ହେବେ-କେଉଁଠିକୁ ଯାଉଛନ୍ତି କ'ଣ କ'ଣ ଦେଖିବେ, କେବେ ଫେରିବେ ଆଦି ଯାବତୀୟ କଥା ବଖାଣି ବସିବେ-

କିହୋ ତୁମକୁ କ'ଣ ଆମେ ଏ ସବୁ କଥା ପଚାରୁଛୁ ? ନ ପଚାରୁଣୁ ତ ଏତେ କଥା-ପଚାରିଲେ ପୁଣି କ'ଣ ନ କହିବ ?

ଆଉ କେତେକ ଅଛନ୍ତି ଯେଉଁମାନେ ନିଜର ଖାଦ୍ୟପେୟ, ବେଶ ପୋଷାକ, ଗହଣାଗାଣ୍ଠି ଅନ୍ୟମାନଙ୍କୁ ଦେଖାଇ ନିଜର ବଡପଣିଆ ପ୍ରକାଶ କରନ୍ତି-ଏମାନେ ଦିନକୁ ଆଠ ଦଶ ଥର ପୋଷାକ ପରିବର୍ତ୍ତନ କରିଦେଖାଇ ହୁଅନ୍ତି ଯେ, ସେମାନଙ୍କର ଯେତେ ପୋଷାକ ଅଛି ତାହା ଆଉ କାହାର ନାହିଁ-ପୁଣି ନିଜ ରେଡ଼ିଓ, ଟେଲିଭିଜନ କି ଟେପ୍‌ରେକର୍ଡରକୁ ସେମାନେ ଏତେ ଯୋରରେ ବଜାନ୍ତି ଯେ, ସେଥିରେ ଆପଣଙ୍କ କାନ ଅତଡ଼ା ପଡ଼ିଯିବ-କିହୋ ଏ ସବୁ ତ ସମସ୍ତଙ୍କ ଘରେ ଅଛି-ତମର ଏକୁଟିଆ ଥିଲା ଭଳିଆ ଏମିତି ଢଣେଇ ହେଉଛ କାହିଁକି ? ସେମାନଙ୍କର ଏପରି କାର୍ଯ୍ୟ କଳାପ ଦେଖି ଆଉ କିଏ କହେ-

''ରଙ୍କୁଣୀ ପାଇଛି ଇଲିଶି, ନା କଣ୍ଟା ମଣ୍ଡା କରି ଗିଳୁଛି ।''

ଏପରି ଚରିତ୍ରର ଲୋକ କେବଳ ସାଧାରଣ ଜନତାଙ୍କ ମଧରେ ନାହାନ୍ତି-ଶିକ୍ଷିତ ଓ ବିଜ୍ଞ ମଣ୍ଡଳୀରେ ମଧ ଅଛନ୍ତି-ଓକିଲଟିଏ ନିଜ ପାରିଲା ପଣିଆର ଏକ ଲମ୍ବା ଭାଷଣ ମହକିଲକୁ ଦେଇ କୁହନ୍ତି-

'ଆମେ ସବୁ ବଡ଼ ଓକିଲ
ଦୁନିଆ ଯାକ ସବୁ ବୋକା
ଆମର ହିଁ ଖାଲି ରହିଛି ଅକଲ ।''

ଶିକ୍ଷକ, ଅଧାପକ, ଡାକ୍ତର, କିରାଣୀ ଓ ଅନ୍ୟମାନେ କିପରି ସେମାନଙ୍କ ବୃତ୍ତି ପ୍ରତି ସଚେତନ ତାହା ଆପଣମାନେ ସମସ୍ତେ ଜାଣନ୍ତି-ଆଉ ଆମର ନେତାମାନେ, ଭୋଟ ଆସୁ ଆସୁ ଭାଷଣ ମାଧମରେ ପାଣିରେ ସର ପକାଇ ନିଜକୁ ପ୍ରକଟିତ କରନ୍ତି-କିଏ କହେ ଭୋଟ ପାଇଲେ ଦେଶକୁ ଦୁଧ ଘିଅରେ ଭସାଇ ଦେବତ ଆଉ କିଏ କହେ ଗାଆଁକୁ ଇନ୍ଦ୍ରଭୁବନରେ ପରିଣତ କରି ଦେବ । ଭୋଟ ସରିଗଲା ପରେ ବନ୍ଧୁଙ୍କର ଆଉ ଦେଖା ନାହିଁ କି ଦର୍ଶନ ନାହିଁ-ଆଉ ଆମେ ସବୁ ନିର୍ବୋଧ ଜନତା ମାରିନେଲେ ମହାପାତ୍ରେ ଚାହିଁଥାରେ କଳକା ପରି କେବଳ ବଲବଲ କରି ଚାହିଁଥାଉ ସେମାନଙ୍କର କପୋଳକଳ୍ପିତ ଆକାଶ କଇଁଆ ଓ ଚିଲିକା ମାଛକୁ ଏକତ୍ର କରିବାର ପ୍ରସ୍ତାବକୁ । ନିଜର ଦୋଷ ଦୁର୍ବଳତା କାଳେ ପଦାରେ ପଡ଼ିଯିବ ସେଥିପାଇଁ ସେମାନେ ସାମ୍ବାଦିକ ସମ୍ମିଳନୀ ଡାକି ଅନ୍ୟର ଦୋଷ ଦୁର୍ବଳତା ବାହାର କରି ଭାବନ୍ତି, ସେମାନେ ଗୋଟି ପଣ ତୁଳସୀ । ସେମାନଙ୍କର ପ୍ରତିଶ୍ରୁତି ଓ ଭାଷଣ ଶୁଣି ଯିଏ ନାହିଁ ସିଏ କହିବ ନ ଦେଖିଲା ଓଉ ଛ ଫଡ଼ା । ଥରେ ନିର୍ବାଚିତ ହୋଇଗଲା ପରେ ବିଧାନସଭା କି ସାଂସଦରେ କିପରି ସେମାନେ ନିଜର ପତିଆରା ଦେଖାଇବାକୁ କାର୍ଯ୍ୟ କଳାପରେ ଲିପ୍ତ ରହୁଛନ୍ତି ତାହାତ ସବୁଦିନେ ଆପଣ ଟେଲିଭିଜନରେ ଦେଖୁଥିବେ ।

ଖାଲି ଅନ୍ୟକୁ ଦୋଷ ଦେଇ ଖସିଗଲେ ଚଳିବ ନାହିଁ-ଆଜିକାଲି ସମୟ ବି ସେପରି ହୋଇଛି-ନିଜ ଢ଼ୋଲ ଯଦି ନିଜେ ନ ପିଟିବ, ତେବେ ତୁମକୁ କେହି ବି ଦି ଗଣ୍ଡା ଦି କଡ଼ାରେ ପଚାରିବେ ନାହିଁ-ବଣମଲ୍ଲୀ ବଣରେ ଝଡିଗଲା ପରି ଆପଣଙ୍କର ସବୁ ଗୁଣ ଗାରିମା, ବିଚକ୍ଷଣ ବୁଦ୍ଧି ଓ ଆତ୍ମ ବଡ଼ିମା ସେମିତି ବଣରେ ହିଁ ଝରିଯିବ-ଆଜିର ସଭ୍ୟ ଶିକ୍ଷିତ ମଣିଷ ପାଖରେ ତାହା ପହଞ୍ଚି ପାରିବ ନାହିଁ-ତେଣୁ, ଆମକୁ ନିଜ ଢ଼ୋଲ ନିଜକୁ ହିଁ ପିଟିବାକୁ ପଡ଼ିବ-ଏହାକୁ ଲକ୍ଷ୍ୟ କରି କବି ଲେଖିଛନ୍ତି-

''ଆଜିର ଯୁଗ ଚଳଣି ସହ ହେବୁ ତୁ ଯଦି ଫିଟ୍
ଆପଣା ଢୋଲ ପିଟ୍ ଭାଇ ଆପଣା ଢ଼ୋଲ ପିଟ୍ ।
ଆପଣା ଅଖେ ଦେ ତୁ ତେଲ
ଆପଣା ଗାଡ଼ି ଆପେ ତୁ ପେଲ
ଆପେ ତୁ କର ଆପଣା ମୂଲ
ହୋଇବ ତୋର ଜିତ୍
ଆପଣା ଢୋଲ ପିଟ୍ ଭାଇ ଆପଣ ଢ଼ୋଲ ପିଟ୍ ।।''

ହଁ ବନ୍ଧୁ, ଆପଣାର ଢ଼ୋଲ ନିଜେ ପିଟ କିଏ ମନା କରୁନାହିଁ-ଆତ୍ମ ବଡ଼ିମା ପ୍ରକାଶ କର କେହି ବାଧା ଦେଉ ନାହିଁ-କିନ୍ତୁ, ଏ ସବୁ କରିବା ସମୟରେ ଯେପରି ଅନ୍ୟମାନଙ୍କର ଅସୁବିଧା ନ ହେବ ସେଥିପ୍ରତି ଟିକେ ଧ୍ୟାନ ଦିଅ-ସମସ୍ତେ ଯେଉଁ ରାସ୍ତାରେ ଚାଲୁଛନ୍ତି, ତୁମେ ଯଦି ସେହି ରାସ୍ତାରେ ଚାଲିବ ତେବେ ମାଦକତା ରହିଲା କେଉଁଠି ? ନିଜର ସ୍ୱତନ୍ତ୍ର୍ୟତା ରହିଲା ବା କ'ଣ ? ସୃଷ୍ଟିରେ ସମସ୍ତେ ଜନ୍ମୁଛନ୍ତି ଆଉ ମରୁଛନ୍ତି-କିନ୍ତୁ, ଲୋକେ କେତେ ଜଣଙ୍କୁ ମନେ ରଖୁଛନ୍ତି-ଯେଉଁମାନେ ତ୍ୟାଗର ଦିହୁଡ଼ି ଜାଳି, ଆତ୍ମ ଗର୍ବ ଆଉ ଆତ୍ମବଡ଼ିମା ଠାରୁ ଦୂରେଇ ରହି ଜନ ସେବାରେ ନିଜକୁ ଉତ୍ସର୍ଗ କରୁଛନ୍ତି-ସେହିମାନେ ହିଁ କାଳଜୟୀ ହୋଇ ରହୁଛନ୍ତି । ଗୁଣୀ ଲୋକକୁ ଲୋକେ ନିଶ୍ଚୟ ପ୍ରଶଂସା କରି ମନେ ରଖିବେ-'ରାଜା ସିନା ପୂଜା ପାଏ ଆପଣା ଦେଶରେ, ଗୁଣୀ ଲୋକ ପୂଜା ପାଏ ଦେଶ ବିଦେଶରେ-ନୀତି ବାକ୍ୟଟିକୁ ତୁମେ କିପରି ଭୁଲି ଯାଉଛ ?

ଶେଷରେ ଏତିକି କହିବି ଆମେ ଏପରି କାମ କରିବା ଯାହା ଦ୍ୱାରା ଅନ୍ୟମାନଙ୍କର କ୍ଷତି ହେବ ନାହିଁ, କି ମନ ଦୁଃଖ ହେବ ନାହିଁ । ନଚେତ୍ ଆମ ପଛରେ ସେମାନେ ନିଶ୍ଚୟ କହିବେ-ନ ଦେଖିଲା ଓଉ ଛଫଡ଼ା-ଏଣୁ, ବେଳ ହୁଁ ସାଧୁ ସାବଧାନ ।



# ପ୍ରଗଳଭତା ଦୂଷଣ ନୁହେଁ ଭୂଷଣ

ବିଚିତ୍ର ଏହି ଦୁନିଆ-ଏଠି ଜାତିକି ଜାତି ଭଳିକି ଭଳି ସ୍ୱଭାବର ଲୋକ-ସମସ୍ତଙ୍କ ଚାଲିଚଳଣି, କଥାବାର୍ତ୍ତା ଓ ରଙ୍ଗଢ଼ଙ୍ଗ ଭିନ୍ନ ଭିନ୍ନ । ହାତର ପାଞ୍ଚଆଙ୍ଗୁଠି ସମାନ ନ ଥିଲା ପରି ସବୁ ମଣିଷଙ୍କ ପ୍ରକୃତି ମଧ୍ୟ ସମାନ ନୁହେଁ । ଏମାନଙ୍କ ମଧ୍ୟରୁ କିଏ ସ୍ୱଳ୍ପ ଭାଷିତ କିଏ କଥା କହିବାରେ ଏକବାର ପ୍ରଗଳଭ୍-ଅର୍ଥାତ୍ ପୁରାପୁରି କୁହାମୁଣ୍ଡା କପିଳା । ଏହି ପ୍ରଗଳଭ୍ ମଣିଷମାନେ କଥା କହିଲା ବେଳେ ସେମାନଙ୍କ ପାଟିରେ ବାଟୁଳି ବାଜେ ନାହିଁ । ଛୋଟିଆ ମଗଜ ଭିତରେ ସେମାନେ ଏତେ କଥା କେଉଁଠି ସାଇତି ରଖିଥାନ୍ତି, ତାହା କେବଳ ସେହିମାନଙ୍କୁ ଜଣା । ସେମାନଙ୍କର ସବୁବେଳେ ବକର ବକର ହେବାଟାକୁ କିଏ ଭଲ ପାଏ ତ ଆଉ କିଏ ତାଙ୍କୁ ଦେଖି ଦେଖି ବାଟ କାଟି ପଳାଇଯାଏ-ସେମାନଙ୍କୁ ଲକ୍ଷ୍ୟ କରି କେତେକ କୁହନ୍ତି-

''ଅତି ଭଲ ନୁହେଁ ଚବର ଚବର
ଅତି ଭଲ ନୁହେଁ ଚୁପ୍,
ଅତି ଭଲ ନୁହେଁ ବର୍ଷା ବାଦଲ
ଅତି ଭଲ ନୁହେଁ ଧୂପ୍ ।''

କିନ୍ତୁ, ସବୁବେଳେ ଚୁପ୍ ରହିବାବି ଭଲ ନୁହେଁ-କାରଣ ଆଜିର କଳି ଯୁଗରେ ଠାକୁର ନ ସପନେଇଲେ ତାଙ୍କୁ ଭୋଗ ମିଳୁ ନାହିଁ-ଯଦି ଜଣେ ନିଜର ସୁବିଧା ଅସୁବିଧା କଥା ମୁହଁ ଖୋଲି ନ କହିବ, ତେବେ ତା ମନ କଥା କିଏବା କାହିଁକି ଜାଣିବ? ଜଣକର ବିଦ୍ୱତା, ଗୁଣ ଗାରିମା ଓ ପାଣ୍ଡିତ୍ୟର କଳନା କରାଯାଏ, ସିଏ ଯେତେବେଳେ ତା'ର ମୁହଁ ଖୋଲି ମିଠା କଥା ପଦେ କୁହେ-କର୍ଣ୍ଣ ବାଟ ଦେଇ ଜଣେ ଅନ୍ୟ ଜଣକର ହୃଦୟରେ ପ୍ରବେଶ କରେ-ସେଥିପାଇଁ କଥା କହିବାକୁ ଏକ ଭୂଷଣ ଭାବରେ ଗ୍ରହଣ କରାଯାଏ । ଏହାକୁ ଲକ୍ଷ୍ୟ କରି କୁହାଯାଇଛି -''ମୁଖ ଫିଟିଲେ ଦୁଃଖ ଯାଏ ।''

ମାତ୍ର, ସବୁବେଳେ ବକର ବକର ହେବା ବି ଭଲ ନୁହେଁ । ଅନ୍ୟ ଦୃଷ୍ଟିରେ ଦେଖିଲେ ପ୍ରଗଳଭ୍ ଲୋକମାନଙ୍କ ମନ ସବୁବେଳେ ସ୍ୱଚ୍ଛ, ନିର୍ମଳ ଓ ପବିତ୍ର -ସେମାନେ କାହାର ଅନିଷ୍ଟ ଚିନ୍ତା କରନ୍ତି ନାହିଁ, କି କାହାକୁ ଖାଲରେ ପକାନ୍ତି ନାହିଁ । ଅନ୍ୟମାନଙ୍କ ପରି ଏମାନେ କଥା ଧରନ୍ତି ନାହିଁ କି କାହାରି ପ୍ରତି ଅସୂୟା ଭାବ ପ୍ରକାଶ କରନ୍ତି ନାହିଁ ।

ଯାହା ଦେଖନ୍ତି ସଫା ସଫା, ମୁହେଁ ମୁହେଁ କହି ଦିଅନ୍ତି । ଛନ୍ଦ, କପଟ, ମାୟା କ'ଣ ସେମାନଙ୍କୁ ଜଣା ନାହିଁ-ନିଛକ ସତ କହିବା ଦ୍ୱାରା ସମାଜ ସେମାନଙ୍କୁ ଭିନ୍ନ ଦୃଷ୍ଟିରେ ଦେଖେ-ମାତ୍ର, ସେମାନେ ଭାବନ୍ତି, ''କହି ଦେଲା କଥା ଓ ବହିଗଲା ପାଣି ଭିତରେ କିଛି ବି ଫରକ ନାହିଁ ।

ସବୁବେଳେ ବକ୍ ବକ୍ ହେଉଥିବା ଲୋକମାନଙ୍କୁ ଆମେ ପ୍ରଗଳଭ୍, ଗପୁଡ଼ା, ଆଗତକୁହା, କୁହାମୁଣ୍ଡା କପିଳା ଆଦି କେତେ ନାଆଁ ଦେଇ ଡାକିଥାଉ । ଯେତେ ଯାହା ଡାକିଲେ ମଧ୍ୟ ବକ୍ ବକ୍ ହେବା' ଗୁଣଟି ମୋଟାମୋଟି ଖରାପ ନୁହେଁ । ସେଥିପାଇଁ ଆମକୁ ଗପୁଡ଼ା ଲୋକମାନଙ୍କୁ ଭଲ ଭାବେ ଚିହ୍ନିବାକୁ ପଡ଼ିବ-ସେମାନଙ୍କ ଚରିତ୍ର ବିଶ୍ଳେଷଣ କରିବାକୁ ହେବ-ସେମାନଙ୍କ କାର୍ଯ୍ୟକଳାପକୁ ଅନୁଧ୍ୟାନ କରିବାକୁ ହେବ-ନଚେତ୍ ଅନ୍ୟମାନଙ୍କ ପରି ଆମକୁ ମଧ୍ୟ ଧୋକା ଖାଇବାକୁ ହେବ । ତେବେ ଆସନ୍ତୁ, ପ୍ରଗଳଭ୍‌ମାନଙ୍କ ଗୁଣକୁ ଟିକେ ପରଖିବା ସହିତ ସେମାନଙ୍କୁ ଭଲ କରି ଚିହ୍ନିବା ।

କଥାରେ ଅଛି ପରା-''କହି ଜାଣିଲେ କଥା ସୁନ୍ଦର, ବାନ୍ଧି ଜାଣିଲେ ମଥା ସୁନ୍ଦର ।'' ଆଜିକାଲି ଯିଏ ବନେଇ ଚୁନେଇ ମନ ନେଇ କଥା କହି ଜାଣିଲା-ସିଏ ସବୁ ଅସମ୍ଭବକୁ ସମ୍ଭବ କରି ପାରିଲା-ଯଦି ଜଣେ ଠିକ୍ ଭାବେ କଥା କହି ନ ଜାଣିଲା, ତେବେ ଓଷଦ ବିକଳରେ ତାଟିଆ କାମୁଡ଼ିବା ସାର ହେବ ସିନା, କାମଟି କିନ୍ତୁ ଠିକ୍ ଭାବରେ କରି ହେବନାହିଁ । ପ୍ରଗଳଭ୍‌ମାନେ କଥାରେ ଲଥା ଯୋଡ଼ି ଅନ୍ୟମାନଙ୍କୁ ପ୍ରଭାବିତ କରି ନିଜର କାମକୁ ଏମିତି ଛଟକରେ କରାଇ ନିଅନ୍ତି ଯେ, ତାହା ଅନ୍ୟମାନେ ଜାଣି ପାରନ୍ତି ନାହିଁ କି କରି ପାରନ୍ତି ନାହିଁ । ମଧୁର ବଚନ କହି ଏମାନେ କଳାକୁ ଧଳା, ଧଳାକୁ କଳା କରି ପାରନ୍ତି । କଥା କହି ଏମାନେ ପାଣିରେ ମଧ୍ୟ ସର ପକାଇ ପାରନ୍ତି । କଥାରେ କଥାରେ ଅନ୍ୟମାନଙ୍କ ମନକୁ ଏପରି ରସେଇ ମଜେଇ ଦିଅନ୍ତି ଯେ, କଥା ଶୁଣୁଥିବା ଲୋକଟି ହସି ହସି ଗଡ଼ିଯାଏ-ମିଛ କଥାକୁ ବି ସତ ମଣି ବସେ ।

ପ୍ରଗଳଭ୍ ମାନେ ଭାରି ବୁଦ୍ଧିଆ-ଉଡ଼ିଗଲା ଚଢ଼େଇର ପର ଗଣି ପାରନ୍ତି-କଥା ମାଧ୍ୟମରେ ଏମାନେ ଅସାଧ୍ୟ କାମକୁ ସାଧନ କରି ପାରନ୍ତି-କାମତ କାମ, ଏମିତିକି ଅନ୍ୟମାନଙ୍କର ଗୁପ୍ତ ଖବର ସେମାନଙ୍କ ପେଟ ଭିତରୁ ଏପରି ଛଟକରେ ଆଦାୟ କରି ନିଅନ୍ତି ଯେ, ଗୁପ୍ତ ରଖିବାକୁ ଚାହୁଁଥିବା କଥାଟି ଆପେ ଆପେ ପ୍ରଘଟ ହୋଇଯାଏ । ସେମାନେ ଯେମିତି ଓଳିଆରୁ ପଡ଼ି ଗଜା । ସେମାନଙ୍କୁ ଲକ୍ଷ୍ୟ କରି କେହି କେହି ବୁଦ୍ଧିଆ ଲୋକ କୁହନ୍ତି -''ଏମନ୍ତ ଭାବରେ କହି ଯାଉଥିବ, କେହି ନ ବୋଲିବେ ଝୁଟ୍ ।'' ତେଣୁ ସେମାନଙ୍କ କୁହାଳିଆ ପଣକୁ ଆମକୁ ତାରଫ୍ କରିବାକୁ ପଡ଼ିବ ହିଁ ପଡ଼ିବ ।

କୁହାଳିଆ ପ୍ରକୃତି ବା ପ୍ରଗଳଭ୍‌ତା ହେଉଛି ଏକ କଳା-ସମସ୍ତେ କିନ୍ତୁ ପ୍ରଗଳଭ୍ ବା କୁହାଳିଆ ହୋଇ ପାରନ୍ତି ନାହିଁ । ପ୍ରଗଳଭ୍‌ମାନଙ୍କର ପ୍ରଗଳଭତା ସବୁବେଳେ ପ୍ରକାଶ ପାଏ ନାହିଁ । ବେଳକାଳ ସମୟ ଓ ସୁବିଧା ମିଳିଲେ ଏହା ଆପେ ଆପେ ପ୍ରକାଶ ପାଇଥାଏ । ଯେମିତି ସମୁଦ୍ରକୁ ଦେଖିଲେ ନଦୀ, ବର୍ଷାକୁ ଦେଖିଲେ ମୟୂର-ଆଉ

ବସନ୍ତ ଋତୁରେ କୋଇଲି ପ୍ରଗଳଭ୍ ହୁଅନ୍ତି-ସେମିତି କୁହାଳିଆମାନେ ଉପଯୁକ୍ତ ସ୍ଥାନ-କାଳ-ପାତ୍ର ଦେଖିଲେ ପ୍ରଗଳଭ୍ ହୁଅନ୍ତି-ସେମାନଙ୍କର ବୁଦ୍ଧି-ବିବେକ ଓ କୌଶଳର ସଦୁପଯୋଗ କରି ଆପଣାର କାମ ହାସଲ କରି ନିଅନ୍ତି ।

ଏହି ଚରିତ୍ରର ଲୋକମାନଙ୍କୁ ଆପଣ ରାସ୍ତାରେ, ଘାଟରେ, ବଜାରରେ, ବସ୍‌ରେ, ଟ୍ରେନ୍‌ରେ, ଅଫିସରେ କିମ୍ବା ସର୍ବସାଧାରଣଙ୍କ ଯିବା ଆସିବା ସ୍ଥାନରେ ନିଶ୍ଚୟ ଭେଟୁଥିବେ । ସେମାନେ ଘରେ କି ବାହାରେ କେଉଁଠି ଚୁପ୍ ହୋଇ ବସି ପାରନ୍ତି ନାହିଁ । ସବୁବେଳେ କିଛିନା କିଛି କହୁଥାନ୍ତି । ଢ଼ିଙ୍କିଶାଳରୁ ଢ଼େଙ୍କାନାଳ ଯାଏ ସବୁ କଥାକୁ ବନେଇ ଚୁନେଇ କୁହନ୍ତି-ତାଙ୍କ କଥା କିଏ ଶୁଣୁ କି ନଶୁଣୁ, ସେଥିପାଇଁ ତାଙ୍କର ଗୁରୁତ୍ୱ ନଥାଏ । ସେମାନଙ୍କ କଥା ଶୁଣି ଅନେକ ଭାବନ୍ତି, କାହିଁକି ଲୋକଟା ଏପରି ବକର ବକର ହେଉଛି-ତାଙ୍କ ପାଟି କ'ଣ ଘୋଳେଇ ହୋଇ ପଡୁନି-କିନ୍ତୁ, କୁହାଳିଆ ଲୋକ ମହା ଚାଲାକ୍-ନଡ଼ିଆର କେଉଁ ଶିରାରେ ପାଣି ବହୁଛି, ସେ କଥା ତାଙ୍କୁ ଭଲ ଭାବେ ଜଣା । କିପରି କଥା କହିଲେ ଜଣେ ଖୁସି ହେବା ସହିତ କାମଟି ହାସଲ କରାଇ ହେବ, ସେମାନେ ତାହା ଭଲ ଭାବେ ଜାଣନ୍ତି ।

ଗୋଟିଏ ଉଦାହରଣ ଦେଲେ ମୋ କଥାଟି ସ୍ପଷ୍ଟ ହୋଇଯିବ । ଧରନ୍ତୁ କୌଣସି ଅଫିସ୍‌ରେ ଆପଣଙ୍କର କାମ ଅଛି-ଆପଣଙ୍କୁ ଭଲ କରି କଥା କହି ଆସେ ନାହିଁ-ସେଠି ଆପଣ କହି କହି କହିବେ, ''ଆଜ୍ଞା କାମଟି ଟିକେ କରି ଦିଅନ୍ତୁ-ମୁଁ ବହୁତ ଥର ଫେରିଲିଣି ।'' ଆପଣଙ୍କ କହିବାର ଢ଼ଙ୍ଗ ଦେଖି ବାବୁ ଜଣଙ୍କ ସଙ୍ଗେ ସଙ୍ଗେ ଭ୍ରୂକୁଞ୍ଚନ କରି କହିବେ, ଆଜି ହୋଇ ପାରିବ ନାହିଁ । ଦେଖୁନାହାନ୍ତି କେତେ ଜରୁରୀ ଫାଇଲ୍ ସବୁ ଟେବୁଲ୍ ଉପରେ ଗଦା ହୋଇଛି । ସେଇଠୁ ଆପଣ ଚୁପ୍ ହୋଇ ଫେରିବେ । କିନ୍ତୁ କୁହାଳିଆ ଲୋକଟି ସଙ୍ଗେ ସଙ୍ଗେ ବନ୍ଧୁରେ ବନ୍ଧୁ ଯୋଡ଼ି ପରିଚୟ ଦେଇ ବସିବ-କିମ୍ବା କଥାର ମୋଡ଼ ବଦଳେଇ ଦେଇ କହିବ ହଉ ଆଜ୍ଞା, ଆପଣଙ୍କ ଦୟା-ଆପଣ ମହାନୁଭବ-ଏ ଅଫିସର ଆପଣ ସର୍ବେସର୍ବା -ଆପଣଙ୍କ ନିର୍ଦ୍ଦେଶରେ ପରା ଏଠି ସବୁ କାମ ସୁରୁଖୁରୁରେ ଚାଲିଛି । ଆପଣଙ୍କ ବିନା ଅନୁମତିରେ ଏଠି ପତ୍ରଟିଏ ମଧ୍ୟ ହଲେ ନାହିଁ । ଏହା ଶୁଣି ବାବୁଙ୍କର ଛାତି କୁଣ୍ଢେ ମୋଟ । ତା ପରେ କୁହାଳିଆ ଲୋକ କହିବେ-''ଆପଣ ଚାହିଁଲେ ମହାନଦୀ ଉଜାଣି ବହିବ-ଘଣ୍ଟା କଣ୍ଟା କିଛି ସମୟ ପାଇଁ ଅଟକି ଯିବ ।'' ତା ପରେ କୁହାଳିଆ ଲୋକଟି ପାଇଁ ଚା' ମଗାଯିବ-ଆଉ କାମ ! ସେଇଠି ସଙ୍ଗେ ସଙ୍ଗେ ହୋଇଯିବ ।

ଆଉ ଗୋଟିଏ ଦୁଇଟି ଉଦାହରଣ ନ ଦେଲେ ଆପଣ ଏମାନଙ୍କୁ ଠିକ୍ ଭାବେ ଚିହ୍ନି ପାରିବେ ନାହିଁ । ଏମାନେ ନିଜର କୁହାଳିଆ ପଣରେ ଅନ୍ୟମାନଙ୍କର ହୃଦୟକୁ ସହଜରେ ଜିଣି ପାରନ୍ତି-ଏଇ ଧରନ୍ତୁ, ବସ୍ ଖୁବ୍ ଭିଡ଼-ଅନେକ ଲୋକ ବସିବାକୁ ସିଟ୍‌ଟିଏ ନ ପାଇ ଛିଡ଼ା ହୋଇ ଯାଉଛନ୍ତି-ଅଧା ବାଟରେ ଜଣେ କୁହାଳିଆ ଲୋକ ଉଠିଲେ-ତା ପରେ ସେ ସବୁ ଯାତ୍ରୀଙ୍କ ଉପରେ ନିଜର ତୀକ୍ଷ୍ଣ ଦୃଷ୍ଟି ବୁଲାଇ ଆଣି ଅନୁମାନ କରି

ଜାଣି ପାରିଲେ କେଉଁଠି ଛିଡ଼ା ହେଲେ ଅନ୍ତତଃ ଟିକେ ଆଡ୍‌ଜଷ୍ଟ କରି ବସି ହେବ-ତା ପରେ ସେହି ସିଟ୍ ପାଖକୁ ଯାଇ ନିଜ କଥାର ଏପରି ଖିଅ ଯୋଡ଼ିବେ ଯେ, ତାଙ୍କ ମଧୁର ବଚନରେ ମୁଗ୍‌ଧ ହୋଇ ଜଣେ ଯାତ୍ରୀ ସାମାନ୍ୟ ଘୁଞ୍ଚି ଯାଇ ଭଦ୍ରଲୋକଙ୍କୁ ଟିକେ ବସିବାକୁ ସ୍ଥାନ ଦେବେ-ଅନ୍ୟମାନେ ଏହା ଦେଖି ତଟସ୍ଥ-ନିଜର ଅପାରଗତା ପଣିଆକୁ ମନେ ମନେ ନିନ୍ଦା କରି ମୁଣ୍ଡରେ ହାତ ମାରନ୍ତି ସିନା, ନିଜେ ସିଟ୍‌ଟିଏ ପାଇ ବସି ପାରନ୍ତି ନାହିଁ ।

ସମାଜରେ ଆଉ କେତେକ କୁହାଳିଆ ଅଛନ୍ତି, ଯେଉଁମାନେକି ଅନ୍ୟମାନଙ୍କର ଦୋଷ ଦୁର୍ବଳତା ଧରି ପଦାରେ ପକାନ୍ତି । ଏହି ଶ୍ରେଣୀର କୁହାଳିଆ ପରିବାରର ବୟସ୍କ ଲୋକମାନଙ୍କ ମଧ୍ୟରେ ଅଧିକ ଦେଖା ଯାଆନ୍ତି । ବୁଢ଼ାବୁଢ଼ୀ ପରିବାରରେ କାହାରି ଦୋଷ ଦୁର୍ବଳତା ଦେଖିଲେ ସଙ୍ଗେ ସଙ୍ଗେ ଚେତେଇ ଦିଅନ୍ତି । ଶାଶୁ ଶଶୁର ବୋହୂମାନଙ୍କର ହସତାମସା, ଚାଲିଚଳଣ ଆଦିର ଭୁଲ ଦେଖିଲେ ସଙ୍ଗେସଙ୍ଗେ ଜଣେଇ ଦିଅନ୍ତି-ଆଜିକାଲିର ଆଧୁନିକା ବୋହୂମାନେ ନିଜର ମାନସମ୍ମାନକୁ ଜଗି ସେମାନଙ୍କ ଆଗରେ ମୁହଁ ଖୋଲି କିଛି ନ କହିଲେ ମଧ୍ୟ ପଛରେ କେତେ ଆଲୋଚନା, ପର୍ଯ୍ୟାଲୋଚନା ଓ ସମାଲୋଚନା କରି ଥାଆନ୍ତି-ଏମିତି ସମୟ ଗଡ଼ି ଚାଲେ-ବୁଢ଼ାବୁଢ଼ୀଙ୍କର କଥା କହିବାର ଶକ୍ତି କମି ଯାଏ-ଏହା ଦେଖି ବୋହୂ କିମ୍ବା ଯୁବକ ଯୁବତୀମାନେ ଶାନ୍ତିରେ ନିଶ୍ୱାସ ମାରନ୍ତି । କିନ୍ତୁ, ଏହା ଦ୍ୱାରା ଓଲଟା ଫଳ ମିଳେ-ଦୋଷ ତୃଟି ଧରିବା କମି ଯିବାରୁ ସେମାନଙ୍କ ମନରେ ଆଉ ଡର ଭୟ ରହେ ନାହିଁ-ଫଳରେ କେହି କାହାରିକୁ ଖାତିର୍ କରନ୍ତି ନାହିଁ । ନିଜ ହାତରେ ନିଜେ ଚଉଦ ପା ବୋଲି ଭାବନ୍ତି । ଛୋଟ ଛୋଟ କଥାରେ ପରସ୍ପର ମଧ୍ୟରେ ଖୁଣ୍ଟାଖୁଣ୍ଟି ଓ କଳିଝଗଡ଼ା ଲାଗନ୍ତି-ଏହା ଦ୍ୱାରା ଘରେ ଅଶାନ୍ତି ସୃଷ୍ଟି ହେବା ସହିତ ସ୍ଥଳ ବିଶେଷରେ ଘର ମଧ୍ୟ ଭାଙ୍ଗି ଯାଏ । ଏବେ ଆପଣ କୁହନ୍ତୁ, କହିବା ପ୍ରକୃତି ଭଲ ନା ଖରାପ ।

ଯିଏ କହି ଜାଣିଛି, ସିଏ ସବୁବେଳେ କହିବ ହିଁ କହିବ-ସିଏତ ଖାଲି କୁହେ ନାହିଁ, ଖାଣ୍ଟି ସତ କଥା ହିଁ କୁହେ । ସମସ୍ତଙ୍କର ମରମ କଥା ହିଁ କୁହେ । ଅନ୍ୟମାନଙ୍କ ଭଲ ଲାଗିବା ନ ଲାଗିବା ପ୍ରତି ସେ ଦୃଷ୍ଟି ଦିଏ ନାହିଁ । ସେଥିପାଇଁ ପରା କୁହାଯାଇଛି-

''ଯେ ସତ କହିବ ସଭାରେ ହାରିବ
ତା ପକ୍ଷ ନୋହିବେ କେହି,
ଧନବନ୍ତ ଜନ ହୋଇଥାଉ ମୂର୍ଖ
ବୋଲିବେ ପଣ୍ଡିତ ସେହି ।''

ସମୟ ଥିଲା କୁହାଳିଆମାନଙ୍କୁ ସମସ୍ତେ ଆଦର କରୁଥିଲେ-ଭଲ ଦୃଷ୍ଟିରେ ଦେଖୁଥିଲେ- ସେଥିପାଇଁ ଆକବରଙ୍କ ଦରବାରରେ ବୀରବଲଙ୍କୁ ସମ୍ମାନ ଦିଆ ଯାଉଥିଲା -ଉତ୍କଳଘଣ୍ଟ ଯଦୁମଣିଙ୍କୁ ମଧ୍ୟ ରାଜାମାନେ ସମ୍ମାନ ପ୍ରଦାନ କରୁଥିଲେ-କୁହାଳିଆମାନଙ୍କୁ

ଭୟ କରି ସମସ୍ତେ ନିଜର ଦୋଷ ତ୍ରୁଟି ସୁଧାରି ନେଉଥିଲେ-ଯାହା ଫଳରେ ସଂସାରରେ ସୁଖଶାନ୍ତି ବିରାଜମାନ କରୁଥିଲା-ସେ ସମୟରେ ଲୋକଙ୍କର ଲାଜ ସରମ ଥିଲା । କିନ୍ତୁ, ଏବେ ସେ ସମୟ ବଦଳି ଗଲାଣି । ଆଜି କେହି କାହା କଥା ଶୁଣିବାକୁ ପ୍ରସ୍ତୁତ ନୁହଁନ୍ତି । ଘରେ ପୁଅ ବାପକୁ, ଝିଅ ମାଆକୁ, ସ୍ତ୍ରୀ ସ୍ୱାମୀକୁ ମାନୁନାହିଁ । ସ୍କୁଲ କଲେଜରେ ଛାତ୍ର ଶିକ୍ଷକଙ୍କୁ, ଅଫିସ୍‌ରେ ତଳିଆ କର୍ମଚାରୀ ଉପରିସ୍ଥ ହାକିମଙ୍କୁ, ସାନମାନେ ବଡ଼ମାନଙ୍କୁ ମାନିବାକୁ ପ୍ରସ୍ତୁତ ନୁହଁନ୍ତି । ସେଥିପାଇଁ କାହାର ସମାଲୋଚନା, ଆଦେଶ ଓ ଉପଦେଶକୁ ମାନୁଛି କିଏ ? ବେଶି କିଛି କହିଲେ ଛୁରା ପେଲା, ହରଣଚାଲ୍ ଓ ହତ୍ୟାକାଣ୍ଡ ଯାଏ କଥା ଯାଉଛି । ଏ ସବୁ ଦେଖି କହିଲାବାଲା ନିଜ ଜୀବନକୁ ଭୟ କରି ଆଜି ପାଟି ବନ୍ଦ ରଖୁଛି । ଯେତେ ଦୁର୍ନୀତି, ଅନ୍ୟାୟ ଓ ଅତ୍ୟାଚାର ଦେଖିଲେ ମଧ ଲୋକ ଆଜି ନ ଦେଖିବାର ଛଳନା କରୁଛନ୍ତି-ସମସ୍ତେ ଭାବୁଛନ୍ତି, ପଙ୍କ କାଦୁଅକୁ ଗୋଡ଼ ବଢ଼ାଇବି କାହିଁକି ନା ଗୋଡ଼ଧୋଇବି କାହିଁକି ?

ସମାଲୋଚନା ଅଭାବରୁ ଦିବାଲୋକରେ ଆଜି ଧର୍ଷଣ, ଲୁଣ୍ଠନ, ହରଣଚାଳ, ଚୋରି, ଡକାୟତି ହେଲେ ବି ଲୋକେ ସବୁ ଦେଖି ନ ଦେଖିବାର ଛଳନା କରୁଛନ୍ତି-କିନ୍ତୁ, ଛୋଟ ପିଲାଟିଏ ତ ବଡ଼ମାନଙ୍କର ଏହି ଛଳନା କଥା ଜାଣେ ନାହିଁ-ସେ ଯଦି ପ୍ରକୃତ ସତକଥା କେଉଁଠି କହି ଦେବାକୁ ଆଗେଇ ଆସୁଛି, ତେବେ ତା'ର ବାପମାଆ ଭୟ ଦେଖାଇ ତା ମୁହଁ ବନ୍ଦ କରି ଦେଉଛନ୍ତି । ଏପରି ସବୁ ଦେଖି କିଛି ନ ଦେଖିବାର ପରିଣାମ ଯେ ଅତି ଭୟଙ୍କର ତାହା ଏବେ କେହି ହୃଦୟଙ୍ଗମ କରି ପାରୁନାହାନ୍ତି । ଏଇଠି ମହାଭାରତ କଥା ଆପଣଙ୍କୁ ସ୍ମରଣ କରାଇ ଦେଉଛି-ଯଦି, ଦୁର୍ଯ୍ୟୋଧନର ସମସ୍ତ ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ଦୃଢ଼ ସ୍ୱରରେ ଭୀଷ୍ମ, ଦ୍ରୋଣାଚାର୍ଯ୍ୟ ଓ ଧୃତରାଷ୍ଟ୍ର ଆଦି ଗୁରୁଜନମାନେ ମୁହଁ ଖୋଲିଥାନ୍ତେ, ତେବେ ଦ୍ରୌପଦୀ ବସ୍ତ୍ର ହରଣ ହୋଇ ନଥାନ୍ତା-କି ମହାଭାରତ ଯୁଦ୍ଧର ସୂତ୍ରପାତ ଘଟି କୁରୁ କୁଳ ଧ୍ୱଂସ ପାଇ ନଥାନ୍ତା ।

ଆଜିର ସମାଜ ଆଉ କେତେ ଦିନ ଯାଏ ଏପରି ଅନ୍ୟାୟ ଅତ୍ୟାଚାରକୁ ବରଦାସ୍ତ କରିବ ? ଏମିତି କେତେ ଦିନ ଯାଏ ସ୍ପଷ୍ଟ ଦିବାଲୋକରେ ଧର୍ଷଣ, ହତ୍ୟା, ହରଣଚାଳ, ହିଂସା, ପୋଡ଼ାଜଳା ଓ ଲୁଟତରାଜ ଚାଲିବ-କେତେ ଦିନ ଯାଏ ସମସ୍ତେ କାପୁରୁଷ ପରି ଏ ସବୁ ଦେଖି ନ ଦେଖିବାର ଛଳନା କରିବେ-କେତେ ଦିନ ଯାଏ ସମସ୍ତେ ଅନ୍ୟାୟ ଅତ୍ୟାଚାରକୁ ନୀରବରେ ସହିବେ ? ସମୟ ଆସିବ ସବୁ ଆପଣା ଛାଏଁ ବଦଳି ଯିବ-ନ କହିବା ଲୋକ ବି ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ପାଟି ଖୋଲିବେ-ତେବେ ଯାଇ ଏ ଘୋର କଳିକାଳର ବିଲୟ ଘଟିବ-ପୁନର୍ବାର ରାମରାଜ୍ୟର ପ୍ରତିଷ୍ଠା ହେବ-ସେ ସମୟ ଆଉ ବେଶି ଡେରି ନୁହେଁ-ଏଣୁ ବେଳହୁଁ ସାଧୁ ସାବଧାନ ।



# ଗୋଦରା କୋଡେ ଯେତେ ମାଡେ ସେତେ

**ମ**ଣିଷ ଜୀବନ ପାଣିର ଗାର-କେତେବେଳେ କେଉଁଠି କେମିତି ଏ ଜୀବନଟା ଚଢ଼େଇ ପରି ଫୁର୍‌ର କିନା ଉଡ଼ିଯାଏ ସେ କଥା ମଣିଷ ନିଜେ ବି ଜାଣି ପାରେନାହିଁ। ସେଥିପାଇଁ ଭାଗବତରେ କୁହାଯାଇଛି-

''ମର୍ତ୍ତ୍ୟ ମଣ୍ଡଳେ ଦେହ ବହି, ଦେବତାହୋଇଲେ ମରଇ ।''

ସବୁ ଜାଣିବି ଏହି ଅଢ଼େଇ ଦିନିଆ ଜୀବନରେ ମଣିଷମାନେ ମୋହମାୟା ସଂସାରର ସୁନେଲି କଳ୍ପନାରେ ବୁଡ଼ି ରୁହନ୍ତି-ସୁଖ ରୂପକ ସୁନା ହରିଣୀ ଧରିବା ପାଇଁ ସଦାସର୍ବଦା ଧଇଁସଇଁ ହୋଇ ଧାଆଁନ୍ତି । ନିଜେ କିପରି ସୁଖରେ ରହିବେ, ନିଜ ପରିବାରର ଲୋକମାନେ କିପରି ଭଲ ଖାଇବେ, ଭଲ ପିନ୍ଧିବେ-କିମ୍ବା ନିଜେ କିପରି ନିଜ ପଡ଼ୋଶୀ, ବନ୍ଧୁବାନ୍ଧବ ଓ ସହକର୍ମୀଙ୍କ ଠାରୁ ଧନଜନ, କୋଠାବାଡ଼ି ଓ ବ୍ୟାଙ୍କ ବାଲାନସ୍‌ରେ ଆଗେଇ ଯିବେ ସେହି ଚିନ୍ତାରେ ସର୍ବଦା ସଂଗ୍ରାମ କରନ୍ତି ।

ଅନ୍ୟର ଦୁଃଖ ସୁଖ ବୁଝିବା ପାଇଁ ଆଜି କାହାରି ପାଖରେ ସମୟ ନାହିଁ । ଅନ୍ୟର ଯନ୍ତ୍ରଣା ଦେଖି କାତର ହେବାତ ଦୂରର କଥା ସାମାନ୍ୟ ଦରଦ ପ୍ରକାଶ କରିବାକୁ କାହା ପାଖରେ ବେଳ ନାହିଁ । ତେଲ ଲୁଣ ସଂସାରର ଏହି ଘୋଡ଼ା ଦୌଡ଼ରେ ଅଣନିଃଶ୍ୱାସୀ ହୋଇ ଧାଉଁଥିବା ମଣିଷ କ'ଣ ସତରେ ସୁଖ ରୂପକ ସୁନାହରିଣୀକୁ ଧରିପାରେ ନା ଅନ୍ୟମାନଙ୍କ ଠାରୁ ଧନ, ଜନ ଓ ମାନରେ ଆଗେଇ ପାରେ ? କଥାରେ ଅଛି ପରା ଯେତେ ବାଉଁଶ ସେତେ ପୋଲ-ଅର୍ଥାତ୍‌, ଯାର ଯେତିକି ଆୟ ତାର ସେଇ ଅନୁପାତରେ ବ୍ୟୟ । ଜଣେ ଯେତେ ଅଧିକ ରୋଜଗାର କରେ ତାର ଆଶା, ଆକାଙ୍‌କ୍ଷା, ଲୋଭ ସେହି ଅନୁସାରେ ବଢ଼ି ବଢ଼ି ଚାଲେ । ସେଥିପାଇଁ ପରା କୁହାଯାଇଛି ମଣିଷର ଆଶା ହେଉଛି ବୈତରଣୀ ନଦୀ । ଛୋଟିଆ ଉଦାହରଣରୁ ଏହାର ସତ୍ୟତା ଜଣା ପଡ଼ିବ ।

ଗରୀବ ଲୋକଟିଏ ମୂଲ ଲାଗି ନିଜ ପରିବାରର ଭରଣ ପୋଷଣ କରେ । ଯେନତେନ ପ୍ରକାରେ ତା ପରିବାରର ଲୋକେ ଢୋକେ ପିଇ ଦଣ୍ଡେ ବଞ୍ଚି ରହୁଥିଲେ । ଥରେ ସେହି ଗରୀବ ଲୋକଟିକୁ କୌଣସି ସୂତ୍ରରୁ କିଛି ଧନ ମିଳିଗଲା-ତା ପରେ ସେ

ଆଉ ରୁଖାଶୁଖା ନଖାଇ, ନ' ତିଅଣ ଛ ଭଜା କରି ଖାଇଲା । କିଛି ଦିନ ପରେ ସେହି ଟଙ୍କାରେ ବ୍ୟବସାୟ କରି ଅଧିକ ଦି' ପଇସା ରୋଜଗାର କଲା । ଏଣିକି ଆଉ ଚାଳଘରେ ନରହି କୋଠାଘରେ ରହିବାକୁ ତା'ର ଇଚ୍ଛା ହେଲା-ଧୀରେ ଧୀରେ ଅନ୍ୟମାନଙ୍କ ପରି ବିଳାସବ୍ୟସନରେ ଜୀବନ ବିତାଇବା ପାଇଁ ତାର ଆଗ୍ରହ ବଢ଼ିଲା । ଫଳରେ କିପରି ଅଧିକରୁ ଅଧିକ ଧନ ରୋଜଗାର କରିବ ସେଇ ଚିନ୍ତାରେ ଲୋକଟି ଅହରହ ସଂଗ୍ରାମ କରି ଚାଲିଲା ।

ଗରୀବ ଲୋକଟିର ଏହି ନିଶା ଆଜି ସମସ୍ତଙ୍କ ମନକୁ ପ୍ରଭାବିତ କରିଛି । ଆଜି ସମସ୍ତେ ବିଳାସବ୍ୟସନରେ ରହିବା ପାଇଁ ଚେଷ୍ଟା ଚଳାଇଛନ୍ତି । କାହାରି ପାଖରେ ଆଜି ସମୟ ନାହିଁ ଅନ୍ୟର ଦୁଃଖ ସୁଖ ବୁଝିବା ପାଇଁ । ପାଖ ପଡ଼ୋଶୀଙ୍କ କଥାତ ଦୂରର କଥା-ନିଜ ପରିବାର ମଧ୍ୟରେ ଜଣେ ଅନ୍ୟ ଜଣଙ୍କର ସୁଖଦୁଃଖ ବୁଝିବା ପାଇଁ ସମୟ ପାଉନାହିଁ । ସେଥିପାଇଁ ଆମ ଦେଶର ଏକାନ୍ନବର୍ତ୍ତୀ ପରିବାରଗୁଡ଼ିକ କ୍ରମେ ଭଙ୍ଗିତୁଟି ଯାଉଛି-ପରସ୍ପର ମଧ୍ୟରେ ଥିବା ସ୍ନେହ-ମମତା ଓ ସଦ୍‌ଭାବ ଧୀରେ ଧୀରେ ତୁଟି ଯାଉଛି ।

କେବଳ ସାନବଡ଼ ସହରରେ ନୁହେଁ-ଗାଁ ଗହଳିର ଲୋକମାନଙ୍କ ଠାରେ ଏହି ମନୋଭାବ ଆଗେ ଜମା ନଥିଲା । ସତରେ କ'ଣ ହେଲା ଏ ଯୁଗ ? ପୁରୁଣା ଦିନର କଥା ସବୁ ଭାବି ବସିଲେ ମୁଣ୍ଡରେ ହାତ ଦେବାକୁ ହେଉଛି । ସମୟ ଥିଲା ମଣିଷ ଅନ୍ୟର ଭଲମନ୍ଦ ବୁଝୁଥିଲା-ନିଜର କ୍ଷମତା ଅନୁଯାୟୀ ଅନ୍ୟକୁ ସାହାଯ୍ୟ ସହଯୋଗ କରୁଥିଲା । ମାତ୍ର, ବର୍ତ୍ତମାନର ଜୀବନ ଓ ଜୀବିକାର ଘୋଡ଼ାଦୌଡ଼ରେ କାହା ପାଖରେ ଆଜି ସମୟ ନାହିଁ ଅନ୍ୟକୁ ସାହାଯ୍ୟ ସହଯୋଗ କରିବା ପାଇଁ ? ସମୟ ସହିତ ତାଳ ଦେଇ ଶିକ୍ଷା ଓ ସଭ୍ୟତାର ବିକାଶ ଘଟୁଛି । ମାତ୍ର, ଆମେ ଯେତେ ଶିକ୍ଷିତ ହେଉଛୁ, ସେଇ ପରିମାଣରେ ହରାଇ ବସୁଛୁ ଆମର ମାନବିକତା, ସ୍ନେହ ମମତା ଆଦି ଦେବସୁଲଭ ଗୁଣ-ତା ବଦଳରେ ଆମମାନଙ୍କ ମନରେ ଶଠତା, ହିଂସା, କ୍ରୋଧ, ପରଶ୍ରୀକାତରତା ଆଦି ପାଶବିକ ଗୁଣ ବଢ଼ି ବଢ଼ି ଚାଲିଛି ।

ମଣିଷ ଗୋଡ଼ରେ ମାଂସ ପିଣ୍ଡୁଳା ବଢ଼ିଲେ ସେ ଗୋଦରା ହୋଇଯାଏ- ଗୋଡ଼ର ଭାରକୁ ବହନ କରି କୌଣସି କାର୍ଯ୍ୟକୁ ଭଲ ଭାବରେ କରିପାରେ ନାହିଁ । ଏକଦା ଗୋଦରା ଲୋକଟି ବସି କରି ଶାଗ ପଟାଳି କୋଡିରେ ହାଣି ହାଣି ଆଗେଇ ଆସି ଦେଖିଲା ଯେ ସେ ଯେତିକି ହାଣି ହାଣି ଆସିଲା-ତା ଉପରେ ବସିକରି ଆଗକୁ ଆଗକୁ ଆସିବା ଦ୍ୱାରା ପଛମାଟିତକ ସମାନ ହୋଇଯାଇଛି । ଏହାକୁ ଲକ୍ଷ୍ୟ କରି ଜଣେ ଜାଣିବା ଶୁଣିବା ଲୋକ ସେ ସମୟରେ କହିଲେ, ''ଗୋଦରା କୋଡେ ଯେତେ ମାଡ଼େ ସେତେ ।'' ସେହି ଦିନୁ ଏହା ଏକ ଲୋକୋକ୍ତିରେ ପରିଣତ ହୋଇଯାଇଛି । ବିଭିନ୍ନ କ୍ଷେତ୍ରରେ ଏହାକୁ ଲୋକମାନେ ପ୍ରୟୋଗ କରିଥାନ୍ତି ।

କେତେକ ମଣିଷର ଗୋଡସିନା ଗୋଦରା ହୁଏ-କିନ୍ତୁ, ଆଜିକାଲି ଆମେ ସବୁ ମନରେ, ହୃଦୟରେ ଓ କାର୍ଯ୍ୟରେ ଗୋଦରା ହୋଇଯାଇଛୁ । ଆମର ଏହି 'ଗୋଦରା' ପ୍ରକୃତିକୁ ଦେଖି ହେଉନାହିଁ -ଯେତେ ପରିଶ୍ରମ କଲେ, ଯେତେ ରୋଜଗାର କଲେ କିମ୍ବା ଯେତେ ଧାଁ ଧଉଡ଼ କଲେ ମଧ ଲାଭକ୍ଷତି ପ୍ରାୟ ସମାନ ରହୁଛି । କ'ଣ ମିଛ କହୁଛି ବୋଲି ଭାବୁଛନ୍ତି କି ? ଏହା ପରୀକ୍ଷା କରି ଦେଖିଲେ ମୋ କଥାର ସତ୍ୟାସତ୍ୟ ନିଶ୍ଚୟ ଆପଣ ଜାଣି ପାରିବେ ।

ପ୍ରଥମେ ଚାକିରିଆ ମାନଙ୍କ କଥାକୁ ଦେଖନ୍ତୁ -ପ୍ରତିବର୍ଷ ସେମାନଙ୍କର ମହଙ୍ଗାଭତ୍ତା ବଢ଼ି ବଢ଼ି ଚାଲିଛି । ଯିଏ ଦି ବର୍ଷ ତଳେ ଦଶହଜାର ଟଙ୍କା ଦରମା ପାଉଥିଲା, ସିଏ ଏବେ କୋଡିଏ ହଜାର ପାଇଲାଣି । କିନ୍ତୁ , ତାର ଯେଉଁ ଅଭାବକୁ ସେଇ ଅଭାବ । ଏହାର କାରଣ କ'ଣ ଜାଣନ୍ତି-ଦରମା ବଢ଼ିବା ସହିତ ତାଳ ଦେଇ ବଜାର ଦର ମଧ ବଢ଼ି ବଢ଼ି ଚାଲିଛି । ତେବେ, ବଜାର ଦର ନିୟନ୍ତ୍ରଣ ନ ହେଲେ ଏମିତି ଦରମା ବଢ଼ିବାରେ ବା କି ଲାଭ ଅଛି କହିଲେ ?

ପୂଜା ପାର୍ବଣ ସମୟରେ ଆପଣ ଦେଖୁଥିବେ ବଡ଼ ବଡ଼ ଦୋକାନୀମାନେ ଲୁଗାପଟା କିମ୍ବା ଅନ୍ୟାନ୍ୟ ବିଳାସ ସାମଗ୍ରୀ ଉପରେ ୧୦% ଠାରୁ ୩୦% ଯାଏ ରିହାତି ଦେଉଛନ୍ତି-ସତରେ କ'ଣ ସେମାନେ ଏହି ରିହାତି ଦିଅନ୍ତି ? ଦଶ ଟଙ୍କା ପଦାର୍ଥ ଉପରେ କୋଡ଼ିଏ ଟଙ୍କାର ମୋହର ଲଗାଇ ଦିଅନ୍ତି-ଆଉ ଗରାଖଙ୍କ ଆଖିରେ ମାୟାଞ୍ଜନ ଲଗାଇ ଦେଇ ସେମାନଙ୍କ ଠାରୁ ପଇସା ଝଡ଼େଇ ନିଅନ୍ତି । ଗରାଖ ତ ଅନ୍ଧ, ସେମାନେ ବା ଜାଣିବେ କେଉଁଠୁ କେତେ ଲାଭ ବା କେତେ କ୍ଷତି ହେଲା ?

ଆଜିକାଲି ହେଲା ବିଜ୍ଞାପନର ଯୁଗ-ବିଜ୍ଞାପନର ଚାତୁରୀ କଥାରେ ଆମେ ପ୍ରଲୋଭିତ ହୋଇ ବଜାରରୁ ନ କିଣିବା ସାମଗ୍ରୀମାନ କିଣି ପକାଉଛୁ । ଆପଣ ଶୁଣୁଥିବେ କେଉଁ ପ୍ରସାଧନ ସାମଗ୍ରୀ ସଙ୍ଗରେ Ball Pen ତ କେଉଁ Water Filter ସଙ୍ଗରେ ରୂପା ଟଙ୍କା ( Free ) ମାଗଣା ଉପହାର ଦିଆଯାଉଥିବା ବେଳେ, ଆଉ କେତେକ କମ୍ପାନୀ ଆଉ ପାଦେ ଆଗେଇ ଯାଇ ଗୋଟିଏ ଜିନିଷ କିଣିଲେ ଆଉ ଗୋଟିଏ ଜିନିଷ (Free) ମାଗଣା ପ୍ରଦାନ କରୁଛନ୍ତି । ଆମେ ସବୁ ସେହି ( Free ) ମାଗଣା ଜିନିଷ ପ୍ରଲୋଭନରେ ପଡ଼ି ପାଖରେ ପଇସା ନଥିଲେ ମଧ ବଡ଼ବଡ଼ ଜିନିଷ ସବୁ ଧାର ଉଧାର କରି କିଣି ପକାଉଛୁ । ଆଉ କେତେକ ବ୍ୟବସାୟ ପ୍ରତିଷ୍ଠାନ ବା ଉତ୍ପାଦନକାରୀ ସଂସ୍ଥା ଗ୍ରାହକମାନଙ୍କୁ ଆକର୍ଷିତ କରିବା ପାଇଁ-ଏକ ନିର୍ଦ୍ଦିଷ୍ଟ ସମୟ ସୀମା ପାଇଁ ଜିନିଷର ମୂଲ୍ୟରୁ କିଛି ଟଙ୍କା ଛାଡ଼(Discount ) କରି ଦିଅନ୍ତି । ଏପରିକି ୫୦% ପର୍ଯ୍ୟନ୍ତ ଛାଡ଼ କରିବାର ପ୍ରଚାର ମଧ କରାଯାଏ । ପ୍ରକୃତରେ କ'ଣ ଜିନିଷର ଦାମ୍ କମେ ? ତଥାପି ମନକୁ ସାନ୍ତ୍ୱନା ଦେବା ପାଇଁ ଆମେ ଋଣ କରି ଜିନିଷମାନ କିଣୁ । ତେଣେ ମୂଳ ସହିତ

ସୁଧ ପଇଠ କରି ଦେଖିଲା ବେଳକୁ ଯେତିକି ଟଙ୍କା ଛାଡ଼ ମିଳିଥିଲା, ତା ଠାରୁ ଅଧିକ ସୁଧ ପରିଶୋଧ କରିବାକୁ ପଡୁଛି । କିମ୍ବା କେତେକ କ୍ଷେତ୍ରରେ ଦେଖାଯାଉଛି ଯେତିକି ଟଙ୍କା ଦେଇ ଜିନିଷ କିଣା ଯାଇଛି, ପ୍ରକୃତରେ ସେ ଜିନିଷର ମୂଲ୍ୟ ସେତିକି ନୁହେଁ । ଆମକୁ ଯେ ଓଧ ସଙ୍ଗରେ ବଣଭୂଆଁ ବାଇ ହେବା ପରି ହେବାକୁ ହେଉଛି, ତାହା ଆମେ କସ୍ମିନ କାଳେ ଜାଣି ପାରୁ ନାହୁଁ ।

ଆଉ ଗୋଟିଏ କଥା ଦେଖନ୍ତୁ -ପରିବେଶର ସୁରକ୍ଷା ପାଇଁ ସରକାରଙ୍କ ତରଫରୁ କୋଟି କୋଟି ଟଙ୍କା ଖର୍ଚ୍ଚ କରାଯାଇ ସବୁଠାରେ ବୃକ୍ଷ ରୋପଣ କରା ଯାଉଛି । କାରଣ ପରିବେଶ ସୁରକ୍ଷା ହେଲେ ଆମର ମଙ୍ଗଳ ହେବ-ଠିକ୍ ସମୟରେ ବର୍ଷା ହେବ-ଭଲ ଚାଷବାସ ହେବ ଓ ଆମେ ସୁଖଶାନ୍ତିରେ ବସବାସ କରିବୁ । କିନ୍ତୁ ,ହେଉଛି କ'ଣ ? ଗଛ ଗୁଡ଼ିକର ଦାୟିତ୍ୱ ନେବା ପରିବର୍ତ୍ତେ ସମୟ ସୁବିଧା ଦେଖି ଆମେ ସେଗୁଡ଼ିକୁ କାଟି ନିଜର କାର୍ଯ୍ୟରେ ଲଗାଉଛୁ । ତେଣେ ଯେତେ ଗଛ ଲଗା ଯାଉଛି, ଏଣେ ତା' ଠାରୁ ଅଧିକ ଗଛ କଟା ଯାଉଛି । କାରଣ ଲୋକମାନଙ୍କ ମନରେ ଏକ ଧାରଣା ଅଛି ଯେ ସରକାରଙ୍କର ଉଭା ଯେତେ ପୋତା ସେତେ । କିନ୍ତୁ , ଆମେ ମାନେ ଭୁଲି ଯାଉଛୁ ଯେ ସେ ସବୁ ରାଜାରାଜୁଡ଼ାଙ୍କ ସମୟରେ ଥିଲା । ଏବେ କ'ଣ ସେ ରାଜା ଅଛନ୍ତି ନା ତାଙ୍କର ରାଜୁତି ଅଛି । ଆମେ ସବୁ ଯଦି ଦେଶ ତଥା ଜାତୀୟ ସମ୍ପତ୍ତିର ଦାୟିତ୍ୱ ନ ନେବା ତେବେ କିଏ ନେବ କହିଲେ?

ଅଶିକ୍ଷିତ ଜନସାଧାରଣଙ୍କୁ ଶିକ୍ଷିତ କରାଇବା ପାଇଁ କେତେତ ଯୋଜନା କାର୍ଯ୍ୟକାରୀ ହେଉଛି-କିନ୍ତୁ, ଦେଖାଯାଉଛି ଯୋଜନା ତା ବାଟରେ ଚାଲିଛି, ଆଉ ଲୋକମାନେ ସେମାନଙ୍କ ବାଟରେ । ଏ ସବୁ ପାଇଁ କେତେ ସ୍ୱେଚ୍ଛାସେବୀ ସଂଗଠନ କାମ କରୁଛନ୍ତି । କିନ୍ତୁ, ଜନସଚେତନତା ଅଭାବରୁ ସେ ସବୁ ଆଦୌ ସଫଳ ହୋଇ ପାରୁନାହିଁ । ଯଦି ଜନସାଧାରଣ ସଚେତନ ନ ହେବେ ତେବେ ସରକାରଙ୍କର ସମସ୍ତ ଯୋଜନା ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କର କର୍ମ ତତ୍ପରତା ଓ ସାହାଯ୍ୟ ସହଯୋଗ ସବୁ ଫସର ଫାଟିଯିବ ।

ଆଜି କଁଥା କାଲିକି ଅନ୍ତର-ଏଠି ଘଡ଼ିକେ ଘୋଡ଼ା ଛୁଟୁଛି । ଏଣୁ, ବେଳହୁଁ ସମସ୍ତେ ସଚେତନ ନହେଲେ ଗୋଦରା କୋଡ଼େ ଯେତେ ମାଡ଼େ ସେତେ ନ୍ୟାୟରେ ସବୁ ଯୋଜନା; ସମସ୍ତ ସାହାଯ୍ୟ ସହଯୋଗ ଫସର ଫାଟିଯିବ । ଦେଶର ଆର୍ଥିକ ଅବସ୍ଥା ଯେମିତି ଅଛି ସେମିତି ରହିବ । ସବୁ ପ୍ରକାର ଯତ୍ନ ଓ ଚେଷ୍ଟା ସତ୍ତ୍ୱେ ଦେଶ କୌଣସି କ୍ଷେତ୍ରରେ ଆଗକୁ ବଢ଼ି ପାରିବ ନାହିଁ । ଏଣୁ ବେଳହୁଁ ସାଧୁ ସାବଧାନ ।



# ହାଁ ଜୀ

ସାଧୁ ଜନେ ! ସାବଧାନ । ଆଜି ମୁଁ ଯାହା କହିବି, ସବୁ ସତ କହିବି । ସତ ଛଡ଼ା ଜମା ମିଛ କହିବି ନାହିଁ । ମିଛ କହିବା ମୋ ଜାତକରେ ନାହିଁ । ତେବେ ଆସନ୍ତୁ ଶୁଣିବା ଆମ ପରି ଆଉ କେତେଜଣ ମଣିଷଙ୍କ କଥା-ସବୁ ଆଖି ଦେଖା କଥା-ଆମ ଅଙ୍ଗେ ନିଭା କଥା ।

ଆମର ଏହି ସୃଷ୍ଟି ବଡ଼ ବିଚିତ୍ର । ଏଠି ଗୋଟିଏ ଜିନିଷ ଅନ୍ୟ ଠାରୁ ଅଲଗା ଆଉ ପୃଥକ-କାହାର କାହାରି ସହିତ ମେଳ ନାହିଁ । ଏହି ସୃଷ୍ଟିରେ ସମସ୍ତଙ୍କ ଠାରୁ ଚାଲାକ୍ ଆଉ ଚତୁର ହେଉଛନ୍ତି ମଣିଷ ଜାତି । ହେଲେ ଏହି ମଣିଷମାନଙ୍କ ପ୍ରକୃତି ମଧ୍ୟ ଅଲଗା ଅଲଗା । କଥାରେ ଅଛି ପରା ପାଞ୍ଚ ମନ ପଚିଶ ପ୍ରକୃତି । ମଣିଷମାନଙ୍କର ଏହି ପ୍ରକୃତିକୁ ନେଇ କେତେ ଯେ ଘଟଣ ଆଉ ଅଘଟଣ ଘଟି ଯାଇଛି, ତାର ହିସାବ କେହି ରଖି ନାହାନ୍ତି । ବାରମ୍ବାର ଚେଷ୍ଟା ସତ୍ତ୍ୱେ ମଧ୍ୟ ମଣିଷମାନଙ୍କର ପ୍ରକୃତିକୁ ସହଜରେ ବଦଳେଇ ହେଉ ନାହିଁ । ବଡ଼ବଡିଆ ମାନେ ସେଥିପାଇଁ ପରା କହିଛନ୍ତି-"ଘୁଷୁରି ପ୍ରକୃତି ପଙ୍କେ ଲୋଟେ, ମଣିଷ ପ୍ରକୃତି ମଲେ ତୁଟେ ।"

ମଣିଷ ପ୍ରକୃତି ବିଷୟରେ ବିଶେଷ କିଛି କହିବା ଆଗରୁ, ଏହି 'ପ୍ରକୃତି' ଟା କ'ଣ ଆପଣଙ୍କୁ ଅବଗତ କରାଇ ଦେଉଛି, ଶୁଣନ୍ତୁ । ନିଜ ମନର ବିଭିନ୍ନ ଭାବାବେଗକୁ ନେଇ କିଏ ରାଗୀ ତ ଆଉ କିଏ ପରଶ୍ରୀକାତର । କିଏ ବିନୟୀ ତ ଆଉ କିଏ ମିଥ୍ୟାବାଦୀ । ଜଣେ ଅନ୍ୟ ଜଣକ ଠାରୁ ଆଚାର ବ୍ୟବହାରରେ ପୃଥକ, ଅଲଗା ଓ ସ୍ୱତନ୍ତ୍ର । ଏପରି ଅଲଗା ଭାବଧାରା ଓ ଚିନ୍ତାଧାରାର ମଣିଷମାନଙ୍କ ମଧ୍ୟରେ ମଧ୍ୟ ସବୁ କଥାର ଭୁଲ୍ ଠିକ୍ ନିର୍ଦ୍ଧାରଣ କରି ଭଲକୁ ପ୍ରଶଂସା ଓ ଖରାପକୁ ନିନ୍ଦା କରୁଥିବା ମଣିଷ ମଧ୍ୟ ଅଛନ୍ତି । ଏହି ଶ୍ରେଣୀର ମଣିଷମାନେ ନିଜର ବିଚାରଶକ୍ତି, ବୁଦ୍ଧି ଓ ଜ୍ଞାନର ପ୍ରୟୋଗ କରି 'ଭଲ' ଆଉ 'ମନ୍ଦ'ର ସପକ୍ଷ ଆଉ ବିପକ୍ଷରେ ନିଜର ସ୍ୱାଧୀନ ମତ ବ୍ୟକ୍ତ କରନ୍ତି । ନିଜର କ୍ଷତି ହେଲେ ମଧ୍ୟ ସତ୍ୟ, ନ୍ୟାୟ ଓ ଧର୍ମକୁ ନିଜ ଜୀବନର ବ୍ରତ ଭାବରେ ଗ୍ରହଣ କରନ୍ତି । ଏହି ଶ୍ରେଣୀର ମଣିଷଙ୍କୁ ଆପଣ ମହାମାନବ, ମହାପୁରୁଷ ବା ଅନ୍ୟ କିଛି କହି ପାରନ୍ତି ।

କିନ୍ତୁ, ଏମାନଙ୍କ ବ୍ୟତୀତ ଆଉ ଥୋକେ ମଣିଷ ଅଛନ୍ତି ଯେଉଁମାନେ ହଲିଲା ପାଣିକୁ ଗୋଡ଼ ବଢାନ୍ତି ନାହିଁ । ବର୍ଷା କୁଆଡ଼େ ଛତା ସିଆଡ଼େ ଦେଖାଇ ନିଜକୁ ରକ୍ଷା କରନ୍ତି । ଏମାନଙ୍କୁ ଆପଣ ସୁବିଧାବାଦୀ ବା ବୋରଝାଞ୍ଜି ଦଳ ମଧ୍ୟ କହି ପାରନ୍ତି । ପୃଥିବୀ ରସାତଳକୁ ଗଲେ ମଧ୍ୟ, ଏମାନଙ୍କର ହୋଲ୍ କି ଡୋଲ୍ ନଥାଏ । ସବୁ କଥାରେ ହଁ ମାରିବା ତାଙ୍କର ପ୍ରକୃତି । ଆପେ ବଞ୍ଚିଲେ ବାପର ନାଆଁ କଥାଟିକୁ ଏମାନେ ଜୀବନର ବ୍ରତ ଭାବେ ଗ୍ରହଣ କରିଥାନ୍ତି । ଏମାନଙ୍କ ପାଇଁ ଘନିଷ୍ଠ ସମ୍ପର୍କ ତୁଟିଯାଏ- ସଂସାର କଳୁଷିତ ହୁଏ-ଦେଶ ଉନ୍ନତି କରି ପାରେ ନାହିଁ । ଏମାନଙ୍କର ନିଜସ୍ୱ ସ୍ୱାଧୀନ ମତ ବୋଲି କିଛି ନଥାଏ-ଏମାନେ ପରଗୋଡ଼ାଣିଆ-ନିଜର ବୁଦ୍ଧି, ଜ୍ଞାନ ଓ ବିବେକକୁ ବଳି ଦେଇ ଅନ୍ୟମାନଙ୍କ କଥାରେ ଭାସି ଯାଆନ୍ତି । ଆପଣା ବୁଦ୍ଧିରେ ଠାକୁର, ପର ବୁଦ୍ଧିରେ କୁକୁର କଥାଟିକୁ ଏମାନେ ସଂପୂର୍ଣ୍ଣ ପାଶୋରି ଦିଅନ୍ତି । ଏହି ଶ୍ରେଣୀର ଚରିତ୍ରମାନଙ୍କୁ ଆମେ ବିଭିନ୍ନ ନାମରେ ଡାକିଥାଉ-ଯଥା ଚାମଚା, ପରଗୋଡ଼ାଣିଆ, କାପୁରୁଷ, ପରବୋଲକରା, ନିଲଠା ଆଦି ଆହୁରି କେତେ କ'ଣ ? ଭଲମନ୍ଦ, ଭୁଲଠିକ୍ ବିଚାର କରିବା ଏମାନେ ପାଶୋରି ଦେଇଥାନ୍ତି । ସତେ ଯେମିତି ଏହା ତାଙ୍କ ଜାତକରେ ନାହିଁ । ସବୁ କଥାରେ ହାଁ...ଜୀ, ହାଁ..ଜୀ କହି ନିଜର ସ୍ୱାର୍ଥ ହାସଲ କରିବାରେ ଏମାନେ ଧୁରନ୍ଧର । ଅର୍ଥାତ୍ ପୁରାପୁରି ଓସ୍ତାଦ୍ ।

ଏହି ପରଗୋଡ଼ାଣିଆମାନଙ୍କର ଯଦି ଆପଣଙ୍କ ପାଖରେ କିଛି କାମ ଅଛି- ତେବେ ସେମାନେ ଆସି ଆପଣଙ୍କ ପାଖରେ ଖାଲି ନସରପସର ହେବେ-ଯେତେ ଯାହା କହିଲେ ମଧ୍ୟ ଛାଡ଼ି କରି ଯିବେ ନାହିଁ । ଆପଣଙ୍କ ହଁ ରେ ହଁ ମିଳାଇବା ହେଉଛି ତାଙ୍କର ପ୍ରକୃତି । ଆପଣ ଯଦି କହିବେ ବଗର ରଙ୍ଗ କଳା, ତେବେ ସେମାନେ କହିବେ ହଁ । ଗଧଟାକୁ ଯଦି ଆପଣ ଘୋଡ଼ା କହିବେ, ତେବେ ସେମାନେ ସଙ୍ଗେ ସଙ୍ଗେ କହିବେ ହଁ ଆଜ୍ଞା ଏହା ଖୁବ୍ ଯୋରରେ ଦୌଡ଼ି ପାରିବ । ଏହି ଚରିତ୍ରର ଲୋକମାନେ ଘଡ଼ିକୁ ଘଡ଼ି ମତ ପରିବର୍ତ୍ତନ କରନ୍ତି । ଏମାନଙ୍କର ବିଭିନ୍ନ ରୂପ-ଏମାନେ ସମାଜର ବିଭିନ୍ନ କ୍ଷେତ୍ରରେ ନିଜର ଆସ୍ଥାନ ଜମାଇ ଥାଆନ୍ତି । ଏମାନଙ୍କୁ ଚିହ୍ନି ଆମେ ଯଦି ସତର୍କତା ଅବଲମ୍ବନ ନ କରିବା ତେବେ ଆମକୁ ଦିନେନା ଦିନେ ଚାରି ପାଞ୍ଚିରୁ ଯିବାକୁ ହେବ ।

ଚାକିରି କ୍ଷେତ୍ରରେ ଏମାନଙ୍କର ଅଖଣ୍ଡ ରାଜତ୍ୱ । ଆପଣାର ସ୍ୱାର୍ଥ ହାସଲ ପାଇଁ ଉପରିସ୍ଥ ହାକିମଙ୍କ ହଁ ରେ ହଁ ମିଳାଇ ସବୁ କାମ କରି ନିଅନ୍ତି । ଏମାନଙ୍କର ମୁଖ୍ୟ ନୀତି ହେଲା-

''ଚାଲେନା ଅଫିସ୍ ଆପଣାର ସ୍ୱାର୍ଥ
ଆନ ପାଇଁ ବଳି ଦେଲେ,
ମନେ ଦୁଃଖ ନାହିଁ ଭୋକ ଉପାସରେ
ଆଉ କାହିଁ କିଏ ମଲେ ।''

ପଛରେ ଯିଏ ଯେତେ ସମାଲୋଚନା କଲେ ମଧ୍ୟ, ଏମାନଙ୍କ ମୁହରେ ଲାଜ କି ସରମ ନଥାଏ । ସେମାନେ ହାକିମଙ୍କ ହଁ ରେ ହଁ ମିଳାଇ ଚାଲନ୍ତି । କାୟା ପଲଟ ହେଲେ ଅର୍ଥାତ୍ ଅଫିସର ବଦଳି ଗଲେ, ଏମାନେ ନିଜକୁ ସଂପୂର୍ଣ୍ଣ ବଦଳେଇ ଦିଅନ୍ତି- ନୂଆ ଅଫିସରଙ୍କର ଭାବ, ରୁଚି ଆଉ ଚିନ୍ତାଧାରା ଜାଣିବାକୁ ଏମାନଙ୍କୁ ମାତ୍ର କେଇ ଘଣ୍ଟା ଲାଗେ । ତା' ପରେ ସିଏ ଅଫିସରଙ୍କର ସଂପୂର୍ଣ୍ଣ ପାଖ ଲୋକ । ଯିଏ ଅଫିସରଙ୍କର ହଁରେ ହଁ ମିଳାଇ ନ ପାରିଲା, ସିଏ ହେଲା ଖରାପ । ତାଙ୍କର ଚରିତ୍ର ଖରାପ । ଛୁଟି ଚାହିଁଲେ ତାଙ୍କୁ ଛୁଟି ମିଳେନା-ତାଙ୍କର ଇନକ୍ରିମେଣ୍ଟ ବନ୍ଦ, ପ୍ରମୋଶନ କଥା ତ ସାତ ସପନ । ଶେଷରେ ପରିସ୍ଥିତି ଏପରି ହୁଏ ଯେ ହଁ ରେ ହଁ ମିଳାଇ ପାରୁ ନଥିବା ଭଦ୍ର ବ୍ୟକ୍ତିଙ୍କୁ କେଉଁ ଦୂରଦୂରାନ୍ତକୁ ବଦଳି ହୋଇ ଯିବାକୁ ହୁଏ ।

ଇଏ ହେଲା ଗୋଟିଏ ମାତ୍ର ନଜରାନା-ଏହି ହାଁ ଜୀ କହୁଥିବା ଚରିତ୍ରମାନଙ୍କୁ ଆପଣ ନିଶ୍ଚୟ କେଉଁଠି ନା କେଉଁଠି ଅଳ୍ପ ବହୁତେ ଭେଟିଥିବେ । ବାହାରକୁ ସାଧାସିଧା ଜଣାଯାଉଥିଲେ ହେଁ ଏମାନେ ଭିତରେ ଭିତରେ ମହା ଚାଲାକ୍ । ଲୁଗା ବଦଳାଇବା ପରି ଏମାନେ ନିଜର ମତ ବାରବାର ବଦଳାଇ ଚାଲନ୍ତି । ତେବେ ଆସନ୍ତୁ ସେମାନଙ୍କୁ ଆଉ ଟିକେ ଭଲ ଭାବେ ପରଖି ନେବା-ଏବେ ଆସନ୍ତୁ ଆଜିକାଲିର ଶିକ୍ଷକ ଓ ଛାତ୍ରଙ୍କ ସମ୍ପର୍କକୁ ଟିକିଏ ପରଖି ନେବା । ଏବେ କ'ଣ ପୂର୍ବର ସେ ଗୁରୁକୁଳ ଶିକ୍ଷା ଅଛି ନା ଶିକ୍ଷକ ଓ ଛାତ୍ର ଅଛନ୍ତି ? ଆଜିର ଛାତ୍ର ଶିକ୍ଷକଙ୍କୁ ସମ୍ମାନ ଦେଖାଇବା ସଂପୂର୍ଣ୍ଣ ଭୁଲି ଗଲାଣି । ଶିକ୍ଷକମାନେ ବି ଛାତ୍ରମାନଙ୍କର ସବୁ କଥାକୁ ବିନା ପ୍ରତିବାଦରେ ମାନି ନେଉଛନ୍ତି । ଛାତ୍ରମାନେ ପାଠ ପଢ଼ିଲେ କେତେ ନ ପଢ଼ିଲେ କେତେ ? ସେଥିପାଇଁ ଶିକ୍ଷକଙ୍କର ଜମା ନିଘା ନାହିଁ-ମାସ ଶେଷକୁ ଟିଉସନ ପଇସା ଗଣ୍ଡାକ ପକେଟରେ ପଶିଲେ ଗଲା । ତେଣିକି ଛାତ୍ର କପି କରନ୍ତୁ ବା ଫେଲ୍ ହୁଅନ୍ତୁ ସେଥିପାଇଁ ଶିକ୍ଷଙ୍କର ଆଦୌ ଗୁରୁତ୍ୱ ନାହିଁ । ଛାତ୍ରମାନେ ମଧ୍ୟ କେଉଁ ନିଆରା କି ? ପାଠ ନପଢ଼ି ଟିଉସନ ସାର୍‌ଙ୍କର ବ୍ୟକ୍ତିଗତ ବା ଘରୋଇ କାମରେ ନିଜକୁ ନିୟୋଜିତ କରି ସାର୍‌ଙ୍କର କୃପା ଦୃଷ୍ଟିରେ ରହିବାକୁ ଘୋଡ଼ା ଦୌଡ଼ ଆରମ୍ଭ କରି ଦିଅନ୍ତି । ନଚେତ୍ ବାର୍ଷିକ ପରୀକ୍ଷାରେ କମ୍ ନମ୍ବର ମିଳିବ ହିଁ ମିଳିବ । ଯେଉଁ ଶିକ୍ଷକ ଛାତ୍ରମାନଙ୍କର ଏହି ଆଚରଣ ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ, ସେ ହେଲେ ସେମାନଙ୍କର ଶତ୍ରୁ । ବାଟରେ ଧମକ-ଛୁରୀ ଦେଖା ସହିତ ତାଙ୍କର ଚଉଦ ପୁରୁଷ ଉଦ୍ଧାର କରିବାକୁ ସେମାନେ ଆଦୌ ପଛ ଘୁଞ୍ଚା ଦିଅନ୍ତି ନାହିଁ ।

ତେଣେ ପରିବାରରେ ମଧ୍ୟ ସେଇ ଏକା କଥା-ଘରେ ପୁଅଝିଅ ଯାହା ମାଗିଲେ ଆଜିକାଲିର ଚାକିରୀଆ ବାପାମାଆମାନେ ତାହା ଯୋଗାଇ ଦେବାକୁ କୁଣ୍ଠିତ ନୁହଁନ୍ତି । ତାଙ୍କ ପିଲାମାନେ ଯେତେ ବିଷୟରେ ଟିଉସନ ହେବାକୁ ଚାହୁଁଛନ୍ତି ହୁଅନ୍ତୁ-ସେଥିପାଇଁ ଆପତ୍ତି ନାହିଁ । ମାସ ଶେଷକୁ ଦରମା ଟଙ୍କା ଗଣି ଦେଇ ନିଜର କର୍ତ୍ତବ୍ୟ ସରିଗଲା ବୋଲି ସେମାନେ ଗର୍ବ କରନ୍ତି । ପୁଅଝିଅ କ'ଣ ପଢ଼ିଲେ ସେ କଥା ବୁଝିବାକୁ ସେମାନଙ୍କର

ବେଳ ନାହିଁ । ତା ସହିତ ପିଲାମାନେ ଯେତେବେଳେ ଯେଉଁ ବହି କିଣିବାକୁ ଚାହିଁଲେ, ବିନା ତଦାରଖରେ ବାପାଙ୍କ ପକେଟରୁ ପଇସା ବାହାରି ପଡୁଛି । ପିଲାଏ ଯେ ଟଙ୍କା ନେଇ ପାଠ୍ୟ ପୁସ୍ତକ (Text Book) ବଦଳରେ ମାନେ ବହି (Meaning Book) କିଣି ପଢ଼ିଲେଣି, ସେ କଥା ଜାଣିବାକୁ ବାପାମାଆଙ୍କର ସୁବିଧା ନାହିଁ । ସେଥିପାଇଁ ଏବେ ବଜାରରେ ଏତେ ପରିମାଣରେ ମାନେ ବହି (Meaning Book) ମିଳୁଛି ଯେ ଆପଣ ଯାଇ ପାଠ୍ୟ ପୁସ୍ତକ (Text Book) ଖୋଜିଲେ ତାହା ମିଳିବ ନାହିଁ । ବହି ଦୋକାନୀକୁ ଏହାର କାରଣ ପଚାରିଲେ ପାଠ୍ୟ ପୁସ୍ତକ (Text Book) ଏବେ ଚାଲୁନି ବୋଲି ସେ ସଫେଇ ଦେଉଛି । ଆପଣ କହିଲେ ଟିଉସନ ଆଉ ମାନେ ବହି ଉପରେ ନିର୍ଭର କରି କେଉଁ ଛାତ୍ର ଜ୍ଞାନୀ ଆଉ ଗୁଣୀ ହୋଇପାରିବ ? କେବଳ କପାଳରେ ହାତ ମାରିବା ହିଁ ସାର ହେବ । ସେଥିପାଇଁ ପରୀକ୍ଷାରେ ପାଶ୍ ହାର ଯେତେ ବଢ଼ିଲେ ମଧ୍ୟ ଶିକ୍ଷାର ମାନ କମି କମି ଚାଲିଛି । ଏଣୁ, ବେଳହୁଁ ସାବଧାନ ନହେଲେ କିଛି ଦିନ ପରେ ଧାନ ବଦଳରେ ଆମ ସମାଜରେ ଅଗାଡି ସଂଖ୍ୟା ହିଁ ବୃଦ୍ଧି ପାଇବ ।

ଆଉ ଜନସାଧାରଣଙ୍କ କଥା-ଆଜିକାଲି କୌଣସି ପରିସ୍ଥିତିର ମୁକାବିଲା କରିବାକୁ ସେମାନେ ସର୍ବଦା ବିତସ୍ପୃହ । ଅନ୍ୟାୟ, ଅନୀତି, ଦୁର୍ନୀତି ଓ ଅତ୍ୟାଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାକୁ ସେମାନଙ୍କର ସତ୍‌ସାହସ ନାହିଁ । ତେଣୁ ଆଜିକାଲିକା ଜମାନାରେ ଗାନ୍ଧୀ, ଲାଲବାହାଦୂର, ଗୋପବନ୍ଧୁ ଓ ମଧୁସୂଦନଙ୍କ ପରି ଜନନାୟକ ଜଣେ ପାଇବା ସହଜ ନୁହେଁ । ସମସ୍ତେ ଆଜି ଆତ୍ମସ୍ୱାର୍ଥୀ । ନେତାମାନେ ଭୋଟ ବେଳେ ଯେତିକି ଖର୍ଚ୍ଚ କଲେ, ନିର୍ବାଚିତ ହେଲା ପରେ କିପରି ତା ଠାରୁ ଦଶଗୁଣ ଲାଭ ପାଇବେ ସେ ନେଇ ବ୍ୟସ୍ତ । ଚାକିରୀଆମାନେ ମଧ୍ୟ ଉପୁରି ଦି ପଇସା ରୋଜଗାର କରିବା ପାଇଁ ତତ୍ପର । ସେଥିପାଇଁ ଏବେ ସବୁଠି କଳାଟଙ୍କାର ସୁଅ ଛୁଟୁଛି । ଯିଏ ଏ ସବୁ ଦେଖି ନ ଦେଖିଲା ପରି ରହିଲା-ଅର୍ଥାତ୍ ହାଁ ଜୀ.. ହାଁ ଜୀ କହିଲା ସିଏ ହେଲା କୋଠ ପୁଅ-ଯିଏ ମୁହଁ ଖୋଲିଲା, ତା ମୁଣ୍ଡରେ ସବୁ ଦୋଷତକ ଲଦି ଦିଆଯାଉଛି । ବିଚରା ସତ୍ୟସନ୍ଧାନୀ ମଣିଷଟି ସେହି ଚକ୍ରବ୍ୟୂହ ମଧ୍ୟରୁ ରକ୍ଷା ପାଇବାକୁ ଜୀବନ ସାରା ସଂଗ୍ରାମ ଚଳାଉଛି । ରକ୍ଷକ ମାନେ ଆଜି ଭକ୍ଷକ ସାଜିଛନ୍ତି । ଏ କଥାର ପ୍ରମାଣ ବୋଫର୍ସ, ହାୱାଲା ଓ ତେହଲକା ପରି ବଡ଼ବଡ଼ ମାରପେଞ୍ଚ ଘଟଣାରୁ ଜଣାପଡ଼େ । ତା ସହିତ ଖଣି ଓ କୋଇଲା ଦୁର୍ନୀତି କଥା ମଧ୍ୟ ଆମେ ସମସ୍ତେ ଭଲ ଭାବରେ ଜାଣୁ । ପୋଲିସ୍‌ମାନଙ୍କ ଲାଞ୍ଚ ନେବା ଓ ଦେବା ସହିତ ନାନା ଅପରାଧରେ ଜଡ଼ିତ ହେବା ଘଟଣା ଆପଣମାନେ ସମସ୍ତେ ଖବରକାଗଜ ପୃଷ୍ଠାରୁ ପଢୁଥିବେ ।

ସେହିପରି ଯୌତୁକର କଥା-ଭଲ ବରଟିଏ ପାଇବା ପାଇଁ କନ୍ୟା ପିତାମାତା ବରପକ୍ଷର ସମସ୍ତ ଦାବି ବିବାହ ଆଗରୁ ହଁ ହଁ କହି ମାନି ନେଉଛନ୍ତି । କିନ୍ତୁ, ବିବାହ ପରେ ସେ ସବୁ ପୂରଣ କରି ନ ପାରି ସ୍ୱ ମାନମହତକୁ ପଦାରେ ପକାଇବା ସହିତ

ନିଜର ନିରିମାଖି ଝିଅଟିକୁ ମରଣ ମୁହଁକୁ ଠେଲି ଦେଉଛନ୍ତି । ଫେସନର କଥାକୁ ମଧ୍ୟ ଲକ୍ଷ୍ୟ କରନ୍ତୁ -ଆଜିକାଲି ଟିଭି ପରଦାରେ ଯେଉଁ ପ୍ରକାର ଯୌନ ଉଦ୍ଦୀପକ ଚିତ୍ର ଓ ଅଶ୍ଳୀଳ ଭାବଭଙ୍ଗୀ ସବୁ ପ୍ରଦର୍ଶନ କରାଯାଉଛି ତାହା ପରିବାରର ସମସ୍ତେ ଏକାଠି ବସି ଦେଖିବା ସମ୍ଭବ ହେଉନାହିଁ । ଏହି ନଗ୍ନତାର ପ୍ରଭାବ ଯୁବଗୋଷ୍ଠୀଙ୍କ ଉପରେ ବହୁଳ ଭାବରେ ପଡୁଛି-ସେମାନେ ସିନେମାରୁ ଦେଖି ନିଜର ଅଙ୍ଗ ପ୍ରଦର୍ଶନ ପାଇଁ ଭଳିକି ଭଳି ପୋଷାକ ପିନ୍ଧୁଛନ୍ତି ତାହା ଆମେ ସମସ୍ତେ ଭଲକରି ଜାଣିଛେ । ମୌନଂ ସମ୍ମତି ଲକ୍ଷଣଂ ନୀତିରେ ପିତାମାତାମାନେ ଏହା ବିରୁଦ୍ଧରେ କେବେବି ସ୍ୱର ଉତ୍ତୋଳନ କରୁନାହାନ୍ତି । ସେଥିପାଇଁ ଅପହରଣ ଆଉ ଧର୍ଷଣର ମାତ୍ରା ସମାଜରେ ବଢ଼ି ବଢ଼ି ଚାଲିଛି । ରାସ୍ତାଘାଟ, ପୂଜା ପାର୍ବଣ ସ୍ଥାନରେ ଷ୍ଟେରିଓର ଯେଉଁ ପ୍ରକାର ଅଶ୍ଳୀଳ ଦୁଇ ଅର୍ଥବୋଧକ ଗୀତମାନ ଶୁଣାଯାଉଛି, ତାହା ଶୁଣି ଭଦ୍ରଲୋକମାନେ କାନରେ ସିନା ହାତ ଦେଉଛନ୍ତି, କିନ୍ତୁ ତା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ପାରୁନାହାନ୍ତି ।

ଚାକିରୀ ବଜାରରେ ମଧ୍ୟ ସେହି କଥା । ଯୋଗ୍ୟତା ଥିଲେ ମଧ୍ୟ ଚାକିରୀଟିଏ ପାଇବାକୁ କୋଡ଼ିଏ ପଚିଶ ହଜାରରୁ ଲକ୍ଷେ ଦୁଇ ଲକ୍ଷଟଙ୍କା ଲାଞ୍ଚ ଦିଆଯାଉଛି ବୋଲି ଶୁଣାଯାଉଛି । ଏ ବିଷୟରେ ସମସ୍ତେ ସଚେତନ ଥିଲେ ମଧ୍ୟ ଏହା ବିରୁଦ୍ଧରେ ସ୍ୱର ଉତ୍ତୋଳନ ନ କରି ଏହାକୁ ଆଖି ବୁଜି ଗ୍ରହଣ କରି ନେଉଛୁ । ଅନ୍ୟାୟ, ଅନୀତି, ଦୁର୍ନୀତି ଓ ଅତ୍ୟାଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାକୁ କାହିଁ କିଏ କେଉଁଠି ଆଗେଇ ଆସୁଛି? କେହି ନୁହେଁ-ସମସ୍ତେ ଖାଲି ପଛରେ କହି ଚାଲିଛନ୍ତି । ସେଥିପାଇଁ ଅବାଧ ଗଛ କଟା ଯାଇ ପରିବେଶ ନଷ୍ଟ କରାଯାଉଛି-ଖଣି ଲିଜ୍ ଦିଆ ଚାଲିଛି-ଅନ୍ୟାୟ ଉପାୟରେ ଋଣ ଦିଆ ଚାଲିଛି-ବଜାର ଦର ହୁ ହୁ ବଢ଼ି ଚାଲିଛି । ମୋଟାମୋଟି ଶୋଷଣ ଆଉ ଅତ୍ୟାଚାର ସମାଜରେ ବଢ଼ି ଚାଲିଛି । ଏ ସବୁ ହଁ ରେ ହଁ ମିଳାଇବା ନୁହେଁ ତ ଆଉ କ'ଣ ?

ଏ ସବୁ ଅନ୍ୟାୟ ଅତ୍ୟାଚାରକୁ ଆଖି ବୁଜି ସହିବାର ବେଳ ଆଉ ନାହିଁ । ସବୁ କଥାରେ ହାଁ ଜୀ କହିବା ମନୋବୃତ୍ତିକୁ ଯଦି ଆମେ ପରିତ୍ୟାଗ ନ କରିବା, ତେବେ ଖୁବ୍ ଶୀଘ୍ର ଏ ସୃଷ୍ଟି ମୂଳପୋଛ ହୋଇଯିବ-ମଣିଷ ସଭ୍ୟତା ଲୋପ ପାଇଯିବ । ଗାନ୍ଧୀ-ଗୋପବନ୍ଧୁଙ୍କର ନୀତି ଓ ଆଦର୍ଶକୁ ଆମେ ସମସ୍ତେ ଗ୍ରହଣ କରିବାର ବେଳ ଆଜି ଉପଗତ । ଭୀମ ଭୋଇଙ୍କର ସେଇ ଅମରବାଣୀ-''ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ'' କୁ ଆଜି ସମସ୍ତେ ନିଜ ଜୀବନର ଆଦର୍ଶ ଭାବରେ ଗ୍ରହଣ କରନ୍ତୁ । ତେବେ ନିଜର ମଙ୍ଗଳ ହେବା ସହିତ ଜଗତର ମଧ୍ୟ ମଙ୍ଗଳ ହେବ-ନାଁ ଆପଣ କ'ଣ କହୁଛନ୍ତି ?



# ପାଗ ବାନ୍ଧୁ ବାନ୍ଧୁ କଚେରୀ ବରଖାସ୍ତ

ଏବେ କ'ଣ ସେ ଯୁଗ ଅଛି ? ନା ପୂର୍ବର ସେ ରାଜ୍ୟ କି ରାଜା ଅଛନ୍ତି- ଆଗେ ସିନା ରାଜା ମହାରାଜା ଥିଲେ-ତାଙ୍କ ଅଧିନରେ ପାତ୍ର ମନ୍ତ୍ରୀ, ସେନାପତି, କଟୁଆଳ, ଦାସଦାସୀ ଆଦି ଏମିତି କେତେ କ'ଣ ଚାକରବାକର ଥିଲେ । ରାଜାଙ୍କର ଦରବାର ବସୁଥିଲା-ରାଜା ଆସିବା ପୂର୍ବରୁ ରାଜସଭାରେ ପାରିଷଦ ବର୍ଗ ବସୁଥିଲେ-ରାଜା ଦରବାରକୁ ବିଜେ ହେବା ପୂର୍ବରୁ ତୁରୀ ବାଜୁଥିଲା-ରାଜାଙ୍କ ଆଗମନର ବାର୍ତ୍ତା ଘୋଷକ ଘୋଷଣା କରୁଥିଲା-ତା ପରେ ରାଜା ସିଂହାସନରେ ବସି ନ୍ୟାୟ-ଅନ୍ୟାୟର ବିଚାର କରୁଥିଲେ । ଏବେ କିନ୍ତୁ ସେ ସମୟ ବଦଳି ଯାଇଛି-ରାଜତନ୍ତ୍ର ଶାସନ ଲୋପ ପାଇ ଗଣତନ୍ତ୍ର ଶାସନ ପ୍ରତିଷ୍ଠା ହୋଇଛି । ପୂର୍ବ ସ୍ମୃତି ସ୍ୱରୂପ କେତେଟା ସ୍ଥାନରେ କେବଳ ଭଙ୍ଗା ରାଜବାଟୀ ଛିଡ଼ା ହୋଇଛି । କର୍ପୂର ଉଡ଼ି ଯାଇଛି । କେବଳ କନା ପଡ଼ି ରହିଛି ।

ଗଣତନ୍ତ୍ର ଶାସନରେ ଚକେ ଗଲେ ବାରହାତ-ଯିଏ କ୍ଷମତାକୁ ଆସିଲା, ତାକୁ ସମସ୍ତେ ମାନିଲେ-କ୍ଷମତାସୀନ ଦଳର ନେତା, ନିଜ ଦଳର ସମସ୍ତଙ୍କୁ ସନ୍ତୁଷ୍ଟ କରୁ କରୁ, କେତେବେଳେ ଯେ ରାଜନୀତିର କାୟା ପଲଟି ଯାଉଛି ତାହା ନିଜେ ବି ଜାଣିପାରୁ ନାହାନ୍ତି । ପୁଣି କେତେକ ନିର୍ବାଚିତ ପ୍ରତିନିଧି ସବୁ ଅସତ୍ୟ ଓ ଅନ୍ୟାୟକୁ ହଜମ କରି ନିଜର ପେଟ ସହିତ ଧନ ସମ୍ପତ୍ତି, ବ୍ୟାଙ୍କବାଲାନ୍ସ ଠୁଳ କରୁ କରୁ କେତେବେଳେ ଯେ ପାଞ୍ଚ ବର୍ଷ ପଳାଇ ଯାଉଛି ତାହା ଜଣା ପଡୁ ନାହିଁ । ଯେଉଁ ଜନସାଧାରଙ୍କ କଥା ବୁଝିବା ପାଇଁ ସେ ନିର୍ବାଚିତ ହୋଇଥିଲେ, ସେମାନଙ୍କ କଥା ନବୁଝି ନିଜ କଥା ବୁଝିଥିବାରୁ, ପରବର୍ତ୍ତୀ ନିର୍ବାଚନରେ ଟେକା ପଥର ମାଡ଼ ଖାଇ ସଚେତନ ହେଲା ବେଳକୁ ନେଡ଼ି ଗୁଡ଼ କହୁଣୀକୁ ବୋହି ଯାଉଛି । ବେଳେବେଳେ ନିର୍ବାଚିତ ପ୍ରତିନିଧି ବିଧାନସଭାରେ ଏପରି ପିଟାପିଟି ହୋଇ ଗଣ୍ଡଗୋଳ କରୁଛନ୍ତି ଯେ ତାହା ନ କହିବା ଭଲ ।

କହିଦେଲା କଥା, ବୋହିଗଲା ପାଣି କିମ୍ବା ଗଡ଼ିଗଲା ବେଳ କେବେ ପଛକୁ ଫେରି ଆସେ ନାହିଁ । ଯୁଗ ଯେତେ ଆଗଉ, ବିଜ୍ଞାନର ଯେତେ ଅଗ୍ରଗତି କି ପ୍ରଗତି ହେଉ ସମୟ, ପାଣି ଓ କଥାକୁ କେବେ ପଛକୁ ଫେରେଇ ଆଣି ହେବ ନାହିଁ । ଏ ଯୁଗରେ ସମୟ ସହିତ ପାଦକୁ ପାଦ ମିଳାଇ ଯିଏ ଆଗେଇ ପାରିଲା ସିଏ ହେଲା ଠିକ୍ ମଣିଷ-କେବଳ ସେ ହିଁ ବାପମାଆଙ୍କର କୁଳ ଉଜ୍ଜ୍ୱଳ କରେ-ଦେଶ ଓ ଦଶର ନାଁ ରଖେ- ତାରି ମୁଣ୍ଡରେ ସୁନାର ପଗଡ଼ି ଭିଡ଼ା ଯାଏ । ଯିଏ ସମୟ ସହିତ ପାଦକୁ ପାଦ ମିଳେଇ ଆଗେଇ ନ ପାରିଲା, ସେ ପଛରେ ପଡ଼ି ରହିଲା-ବାପମାଆଙ୍କ ନିକଟରେ ସେ କୁଳାଙ୍ଗାର,

ସାଙ୍ଗସାଥିଙ୍କ ନିକଟରେ ଗବା, ସ୍ତ୍ରୀ ନିକଟରେ ନିକମା, ଅଳସୁଆ ଏମିତି କେତେକେତେ ମାଗଣା ବିଶେଷଣ ଲାଗିଯାଏ ତା ପଛରେ-ବିଚରା ନିରୀହ ମଣିଷଟି ନିଜ ଭାଗ୍ୟକୁ ଆଦରି ସମସ୍ତଙ୍କ ଟାହି ଟାପରାକୁ ଅତି ନିର୍ଲଜଙ୍କ ପରି ହଜମ କରି କୌଣସି ମତେ ବଞ୍ଚିଯାଏ ।

କିନ୍ତୁ,ଏମିତି କେତେକ ଚତୁର ସିଆଣିଆ ଲୋକ ବି ସମାଜରେ ଅଛନ୍ତି-ଯେଉଁମାନେ ସମୟକୁ ନିଜର ହାତମୁଠାରେ କିମ୍ବା ପିନ୍ଧା ଧୋତିର ଖୋସଣିରେ ଗଣ୍ଠି ପକେଇ ରଖିଲା ପରି ଦେଖେଇ ହେଲେ ହେଁ ସମୟ ସହିତ ତାଳ ଦେଇ ଚାଲି ପାରନ୍ତି ନାହିଁ । କେବଳ ଗାନ୍ଧିଜୀ ଠିକ୍ ସମୟରେ ଠିକ୍ କାମ କରୁଥିଲେ ବୋଲି ଗୋରା ସାହେବମାନଙ୍କୁ କେତେ ଘାଟରେ ପାଣି ପିଆଇ ପାରୁଥିଲେ-ନ ହେଲେ କ'ଣ ସେମାନେ ପେଡ଼ିପୁଟୁଳା ବାନ୍ଧି ଏତେ ସହଜରେ ନିଜ ଦେଶକୁ ଫେରି ଯାଇଥାନ୍ତେ ? ଆଉ ଆଜିକାଲିର ନେତାଏ ଭୁରିଶ୍ରବା ପାଗ ବାନ୍ଧୁ ବାନ୍ଧୁ ମହାଭାରତ ଯୁଦ୍ଧ ଶେଷ ହେଲା ପରି କେବଳ ପ୍ରସ୍ତୁତ ହେଉହେଉ ଅନେକ କାମ ସରି ଯାଉଛି-କେଉଁଠି ସାଧାରଣ ସଭାରେ ନିଜର ଚାମଚାମାନଙ୍କ ସହିତ ଆସି ପହଞ୍ଚିଲା ବେଳକୁ ସଭା ସରି ଯାଉଛି-ବା ଶ୍ରୋତାମାନେ ବିରକ୍ତ ପ୍ରକାଶ କରି ପଳାଇ ଯାଉଛନ୍ତି । କେଉଁଠି ବହ୍ବାରମ୍ଭେ ଲଘୁକ୍ରିୟା ପରି ନେତାଙ୍କର ଭୋଜିଭାତରେ ସାଧାରଣ ସଭା ସରି ଯାଉଛି ।

ଘର ପାଖ ଲୋକେ କିପରି ଗାଡ଼ିଫେଲ୍ ହୁଅନ୍ତି, ସେ କଥା ସମସ୍ତେ ଜାଣନ୍ତି । ଖାଲି କ'ଣ ଘର ପାଖ ଲୋକ-ଅଳସୁଆ, ଅର୍ଦ୍ଧ ଅଳସୁଆ, ବାବୁ, ବଡ଼ବାବୁ ଓ ଫୁଲ୍‌ବାବୁମାନେ ମଧ୍ୟ ନିଜ ଗୁଣରୁ ଗାଡ଼ି ଫେଲ୍ ହୋଇଥାନ୍ତି । ଅଳସୁଆମାନେ ତ ପିଟା କହୁଣିଆ-ସେମାନେ ଗାଡି ଫେଲ୍ ହେବା ସ୍ୱାଭାବିକ । ମାତ୍ର, ବାବୁମାନେ କିପରି ଗାଡ଼ି ଫେଲ୍ ହୁଅନ୍ତି ଶୁଣନ୍ତୁ । ସକାଳ ଗାଡ଼ିରେ ବାବୁ ଯିବେ ବୋଲି ଘଣ୍ଟାଏ ଆଗରୁ ନିତ୍ୟକର୍ମ ସାରି, କଡ଼ା ଇସ୍ତ୍ରୀକରା ସୁଟ୍‌ସାର୍ଟ ପିନ୍ଧି, ସ୍ତ୍ରୀଙ୍କୁ ଅର୍ଡ଼ର ଦିଅନ୍ତି କପେ ଗରମାଗରମ ଚା ପିଇବା ପାଇଁ । ଚା' ପ୍ରସ୍ତୁତ ହୋଇଯାଏ ଓ ବାବୁ ଆରାମରେ ସେତକ ପିଇ ଦିଅନ୍ତି । ଚା ପିଆ ପର୍ବ ପରେ ବାବୁ କିନ୍ତୁ ସଙ୍ଗେ ସଙ୍ଗେ ବାହାରନ୍ତି ନାହିଁ-କାରଣ କ'ଣ ଜାଣନ୍ତି-ସେ ବାବୁ ଲୋକ-ତାଙ୍କର ମାନ ସନମାନ ଅଛି, ଖାତିର୍ ଅଛି-ସେ ବା କିପରି ଚାଲି ଚାଲି ବସ୍‌ଷ୍ଟାଣ୍ଡ ଯାଏ ଯିବେ-ତା ପରେ ଚାକର ଟୋକାକୁ ପଠାଯାଏ ରିକ୍‌ସା ଡାକିବାକୁ-ବିଚରା ଚାକର ଟୋକା କାକୁତି ମିନତି ହୋଇ ଶୋଇଥିବା ରିକ୍‌ସାବାଲାକୁ ଡ଼ାକି ଆଣେ-ବାବୁ ରିକ୍‌ସା ଚଢ଼ି ବସ୍‌ଷ୍ଟାଣ୍ଡରେ ପହଞ୍ଚିଲା ବେଳକୁ, ବସରେ ଏତେ ଭିଡ଼ ଯେ ସୋରିଷ ପଡ଼ିବାକୁ ଜାଗା ନାହିଁ-ତା ପରେ ବାବୁଙ୍କର ଚାକର ଉପରେ ଗାଳି, ତା'ର ଚଉଦ ପୁରୁଷ ଉଦ୍ଧାର ଓ ବାବୁଙ୍କର ଗସ୍ତ ବାତିଲ୍ । ବିଚରା ନିରୀହ ଚାକରଟି ସ୍ୱର୍ଗକୁ ନିଶୁଣି ନାହିଁ କି ବଡ଼ ଲୋକଙ୍କୁ ଉତ୍ତର ନାହିଁ ନ୍ୟାୟରେ ପେଟପାଟଣାକୁ ଜଗି ଚୁପ୍ ରହିବାକୁ ବାଧ୍ୟ ହୁଏ ।

କିନ୍ତୁ, ଯିଏ ସମୟ ସଚେତନ, କର୍ମ ଚଞ୍ଚଳ-ସେ ଗାଡ଼ି ଛାଡ଼ିବାର ଯଥେଷ୍ଟ ଆଗରୁ ଆଟାଚ ବା ବ୍ୟାଗ୍ ଧରି ବସ୍‌ଷ୍ଟାଣ୍ଡରେ ପହଞ୍ଚି ସାରିଥାଏ-ବସ୍ ଭିଡ଼ ଥିଲେ ମଧ୍ୟ

କଷ୍ଟ ସ୍ୱୀକାର କରି ଛିଡ଼ା ହୋଇଯିବାକୁ କୁଣ୍ଠିତ ହୁଏ ନାହିଁ । ମାତ୍ର, ଅଳସୁଆ କି ଫୁଲ୍‌ବାବୁମାନେ ଏପରି କରି ପାରନ୍ତି ନାହିଁ । ଶୋଇଲା ପୁଅର ଭାଗ ନାହିଁ, ଏ କଥା ସେମାନେ ଚିନ୍ତା ହିଁ କରନ୍ତି ନାହିଁ । ସେମାନଙ୍କ ନିକଟରେ ସମୟ ଓ କାମ ଅପେକ୍ଷା ଦେଖାଣିଆ ଭାବ ଅଧିକ । ଏହି ଦେଖାଣିଆ ଭାବ ଯୋଗୁ ଆମ ଦେଶ, ଆମ ଜାତି ଦିନକୁ ଦିନ ତଳକୁ ଖସି ଖସି ଯାଉଛି-ଦଙ୍ଗା, ହଙ୍ଗାମା, ଲୁଣ୍ଠନ ଓ ଧର୍ଷଣ ଆଦି ଅନୈତିକ କାର୍ଯ୍ୟକଳାପ ବଢ଼ି ବଢ଼ି ଚାଲିଛି ।

ସମାଜଟା ଆଜି ଏପରି କଳୁଷିତ ହୋଇଗଲାଣି ଯେ,ଲୋକେ ବାସ୍ତବତା ଅପେକ୍ଷା କାଳ୍ପନିକ ରାଜ୍ୟରେ ବୁଲିବାକୁ ଅଧିକ ଭଲ ପାଉଛନ୍ତି । 'ରାଜାଙ୍କ ହାତରେ ମଲି' ଗଳ୍ପର ସର୍ବଜ୍ଞାଣ ଜୋଇଁ ପରି ସମସ୍ତେ କିଛି ନକରି ସୁନା ମୁକୁଟ ପିନ୍ଧିବାକୁ ବ୍ୟସ୍ତ । ସେମାନେ ବୁଝୁ ନାହାନ୍ତି ଯେ -

''ସାତ ଚକୁଳି ଚଉଦ ସେଁ
ଶାଶୁ ବୋଇଲା ଜୋଇଁ ମୋର ସର୍ବଜ୍ଞେ
କାଦୁଅ ଚକଟି ଚକଟି ପାଇଲି ଫାଳ,
ଏବେ ରାଜାଙ୍କ ହାତରେ ମଲି ''

ଦାଣ୍ଡ ଘରେ ବସି ଚଉଦ ଥର ସେଁ ଶବ୍ଦରୁ ଶାଶୁ ସାତୋଟି ଚକୁଳି ତିଆରି କରିଛନ୍ତି ବୋଲି କହିବାରୁ, ଜୋଇଁ ସର୍ବଜ୍ଞାଣ ବୋଲି ଶାଶୁ ଚାରିଆଡ଼େ ପ୍ରଚାର କଲେ-ଲୋକ ତୁଣ୍ଡ ସହସ୍ର କୋଶ-କାହା ତୁଣ୍ଡରେ କିଏବା ବାଡ଼ ବତା ଦେବ-କଥାଟା ରାଷ୍ଟ୍ର ହୋଇଗଲା ରାଜ୍ୟ ସାରା-ତା ପରେ ଜଣେ ଚାଷୀର ଲଙ୍ଗଳ ଫାଳ ହଜିଲା-ଜୋଇଁ ରାତି ଅନିଦ୍ରା ହୋଇ କାଦୁଅ ଚକଟି ଲଙ୍ଗଳ ଫାଳ ଖୋଜି ପାଇଲା-ଶେଷରେ କଥା ରାଜାଙ୍କ କାନକୁ ଯିବାରୁ ଜୋଇଁକୁ ପରୀକ୍ଷା କରିବା ପାଇଁ ରାଜା ହାତରେ ମଲ୍ଲୀ ଫୁଲ ଧରି କ'ଣ ଧରିଛି ପଚାରିବାରୁ ଜୋଇଁ ଭୟରେ ସମସ୍ତ ସତ କଥା କହି, ଶେଷରେ ରାଜାଙ୍କ ହାତରେ ମରିବା ଅର୍ଥରେ 'ମଲି' କହିବାରୁ, ରାଜା ଧରିଥିବା ମଲ୍ଲୀଫୁଲକୁ ତଳେ ପକାଇ ଜୋଇଁ ସର୍ବଜ୍ଞାଣ ବୋଲି ସ୍ୱୀକାର କଲେ । ତା ସହିତ ରାଜସମ୍ମାନ ଓ ବିପୁଳ ଅର୍ଥ, ଧନସମ୍ପତ୍ତି ପ୍ରଦାନ କଲେ- ଫଳରେ ଜୋଇଁର ଭାଗ୍ୟ ପରିବର୍ତ୍ତନ ହେଲା । କିନ୍ତୁ ଆଜିର କୁଛ୍ ଜାନ୍‌ତା ନେହିଁ ବ୍ୟକ୍ତ ସବ୍‌ଜାନତା କହି ଯେତେ ଧେଣ୍ଡୁରା ପିଟିଲେ ମଧ୍ୟ ଶେଷରେ ସେମାନଙ୍କର ଅସଲ ମୁଖା ଖୋଲି ଯାଉଛି-ବୁଢ଼ିଗଲା ଗୋଡ଼ ତଳକୁ ତଳକୁ ପରି ସେମାନଙ୍କର ଛଳନା, ପ୍ରତାରଣା ସବୁ ଧରା ପଡ଼ିଯାଉଛି । ସର୍ବଜ୍ଞାଣ ଜୋଇଁ ପରି ଆଜିର ଗଣତନ୍ତ୍ର ପ୍ରଥାନୁଯାୟୀ ଭୁଷ୍‌ପଣ୍ଡିତ, କାଶୀପଣ୍ଡିତ କି ଖାସି ପଣ୍ଡିତ ଆଦି ଉପାଧି ଓ ଉପଢୌକନ ପାଇବା ପାଇଁ ଆଶାୟୀ ବ୍ୟକ୍ତିମାନଙ୍କର ସବୁ ଆଶା ସବୁ ସ୍ୱପ୍ନ କେବଳ ସ୍ୱପ୍ନରେ ହିଁ ରହି ଯାଉଛି ।

ସରକାରୀ କ୍ଷମତାର ଅପବ୍ୟବହାର କରି ଇନ୍ଦ୍ର ଚନ୍ଦ୍ର ମାନୁ ନଥିବା ନେତା ଓ କର୍ମଚାରୀମାନଙ୍କର ଏମିତି ଦୁର୍ଦ୍ଦଶା ହେଉଛି ଯେ ତାହା ନ କହିବା ଭଲ । ଯେଉଁମାନେ

ଦଳ କ୍ଷମତାରେ ଥିଲା ବେଳେ ମୁଣ୍ଡରେ ପାଗ ବାନ୍ଧି ଲୋକମାନଙ୍କୁ ହଇରାଣ ହରକତ କରୁଥିଲେ, ଦଳ କ୍ଷମତାରୁ ଚାଲିଗଲା ପରେ ସେମାନଙ୍କର କୌଣସି କୌଶଳ କି ପ୍ରଭାବ ଆଉ କାମ କରୁନାହିଁ-ଯେଉଁମାନେ ଆଜ୍ଞା ଆଜ୍ଞା କହି ସେମାନଙ୍କ ପଛରେ ଲାଙ୍ଗୁଡ଼ ପରି ଲାଗି ରହୁଥିଲେ, ସେମାନେ ଆଜି ଦେଖି ନ ଦେଖିଲା ପରି ମୁହଁ ଆଡେଇ ଚାଲି ଯାଉଛନ୍ତି । ଢାଲିଆତି, ଛୁଆଚୋରୀ ଆଦି ଭାବ ସବୁଦିନେ ତିଷ୍ଠି ରହି ପାରେ ନାହିଁ-ନିଜ ଭୁଲ୍‌କୁ ଜାଣି ସେ ବିଷୟରେ ଭାବିଲା ବେଳକୁ ନେଡ଼ିଗୁଡ଼ କହୁଣୀକୁ ବୋହି ଯାଇଥାଏ-ଆଉ କିଛି କରିବାର ଉପାୟ ନଥାଏ ।

ଖାଲି କ'ଣ ଲୋକଙ୍କ କଥା-ଏବେ, ସରକାରୀ/ବେସରକାରୀ ଯୋଜନା ସବୁକୁ ଦେଖାଯାଉ-ସରକାରୀ ଯୋଜନା କେବଳ କାଗଜ କଲମରେ ଚାଲିଛି । ଯୋଜନାର ସଫଳତା ମିଳିବ କି ନାହିଁ ସେଥିପାଇଁ କମିଶନ କି ଫମିଶନ ବସି ତୁଛାଟାରେ ଲୋକବଳ ଓ ଅର୍ଥ ଅପଚୟ କରାଯାଉଛି-ସେ ସବୁକୁ ଯଦି ପ୍ରତ୍ୟକ୍ଷ ଭାବରେ ଅନୁଧ୍ୟାନ ଓ ଅନୁଶୀଳନ କରାଯାଇ କାର୍ଯ୍ୟକାରୀ କରାଯାଆନ୍ତା, ତେବେ ଏମିତି ଆଉ ଅର୍ଥର ଅପଚୟ ଘଟନ୍ତା ନାହିଁ-କି ଦେଶ ଗରିବରୁ ଗରିବ ହୁଅନ୍ତା ନାହିଁ । କୌଣସି ଯୋଜନା ପାଇଁ ପ୍ରାଥମିକ ସ୍ତରରେ ଯେତିକି ଖର୍ଚ୍ଚର ଅଟକଳ କରାଯାଉଛି-କାମ ଶେଷ ହେଲା ବେଳକୁ ତା ଠାରୁ ଦୁଇ ବା ତିନି ଗୁଣ ଅଧିକ ଖର୍ଚ୍ଚ ହେଉଛି-ଫଳରେ ଯୋଜନାଟି ଅର୍ଥାଭାବରୁ ବର୍ଷ ବର୍ଷ ଧରି ପଡ଼ି ରହୁଛି । କେତେକ ଯୋଜନା ବି ଅଧାରୁ ଆଉ କାର୍ଯ୍ୟକାରୀ ହୋଇ ପାରୁନାହିଁ-ଯେଉଁ ଲକ୍ଷ୍ୟ ଓ ଉଦ୍ଦେଶ୍ୟ ନେଇ ଯୋଜନା ପ୍ରସ୍ତୁତ ହେଉଛି-ବିଳମ୍ବ ଜନିତ କାରଣରୁ କିଛି ବର୍ଷ ପରେ ଦେଖାଯାଉଛି ଯେ ସେହି ଯୋଜନାର କୌଣସି ଆବଶ୍ୟକତା ନାହିଁ । ସରକାର ପରିବର୍ତ୍ତନ ହେଲେ କାୟାପଲଟ ପରି ଦୁଇ ତିନୋଟି ଯୋଜନାକୁ ମିଶେଇ ଦେଇ ଗୋଟିଏ କରି ଦିଆଯାଉଛି ବା ଯୋଜନା ସମ୍ପୂର୍ଣ୍ଣ ବନ୍ଦ କରି ଦିଆଯାଉଛି । କର୍ମକର୍ତ୍ତାଙ୍କର ଏପରି ଖାମଖିଆଲି ନୀତି ଯୋଗୁ ସରକାରୀ ସ୍ତରରେ ପରିଚାଳିତ ସମସ୍ତ ଯୋଜନା କ୍ଷତିରେ ଚାଲିଥିବା ବେଳେ ବେସରକାରୀ ସ୍ତରରେ ପରିଚାଳିତ ଯୋଜନା ସବୁ ଲାଭ କରି ଚାଲିଛନ୍ତି । କେଉଁଠି କେଉଁଠି ଉଚ୍ଚ କର୍ତ୍ତୃପକ୍ଷଙ୍କର ମନମୁଖୀ ଚିନ୍ତାଧାରା ଓ କାର୍ଯ୍ୟପ୍ରଣାଳୀ ପାଇଁ କେତେଯେ କର୍ମଚାରୀ ଚାକିରୀ ହରାଉଛନ୍ତି ବା ମନସ୍ତାପରେ ସମୟ କାଟୁଛନ୍ତି ତାହା ବାବୁଙ୍କୁ ଜଣାପଡୁନାହିଁ । କିହୋ କାହାକୁ ସାହାଯ୍ୟ କରିବା ତ ତମ ଢାତକରେ ନାହିଁ ଅନ୍ୟମାନଙ୍କ ଦାନାରେ ଧୂଳି ଦେଉଛ କାହିଁକି?

ଏବେ ଆମର ଛାତ୍ର ସମାଜକୁ ଦେଖନ୍ତୁ -ପିଲାଏ ଆମ ଦେଶର ଭବିଷ୍ୟତ । ସେମାନଙ୍କ ଶିକ୍ଷା, ଦୀକ୍ଷା ଓ ଉନ୍ନତିରେ ଦେଶର ସଫଳତା ନିର୍ଭର କରୁଛି-ସେମାନଙ୍କ ପଢ଼ିବା ପାଇଁ କେତେ ସ୍କୁଲ୍, କଲେଜ, ଟ୍ରେନିଂ ଇନ୍‌ଷ୍ଟିଚ୍ୟୁଟ୍ ବସା ଯାଉଛି-କିନ୍ତୁ ସେମାନଙ୍କ ଭିତରୁ ସମସ୍ତେ କ'ଣ ପାଠ ପଢୁଛନ୍ତି ନା ମଣିଷ ହେଉଛନ୍ତି ? ଫଳରେ ଧାନ ଠାରୁ ଅଧିକ ବାଳୁଙ୍ଗା ସୃଷ୍ଟି ହେଉଛି । ବାପା ମା ଟଙ୍କା ପଇସା ଖର୍ଚ୍ଚ କରି ହାଲିଆ-କିନ୍ତୁ, ବାପା ପୁଅ ଦୁହେଁ ରାତି ଅନିଦ୍ରା, ମୁଗୁରା ପଛ ମେଲା ପରି ପିଲାଏ ହରତାଳ, ଅନଶନ,

ବସ୍ ପୋଡ଼ି ଓ ବୋମା ଫିଙ୍ଗା ଆଦି ନାନାପ୍ରକାର କୁ କାର୍ଯ୍ୟରେ ଲିପ୍ତ ରହି ପାଠ ଘରେ ଶୂନ ବୁଲାଉଛନ୍ତି । ଆଗରୁ ତ ବର୍ଷକରେ ୩୬୫ ଦିନରୁ ରବିବାରକୁ ମିଶାଇ ୧୪୮ ଦିନ ଛୁଟି-ତା ବାଦେ ଏହି ସବୁ ହରତାଳ ଓ ଗଣ୍ଡଗୋଳ ପାଇଁ ପୁଣି ଆଉ ୫୦ କି ୧୦୦ ଦିନ ଛୁଟି ହେଉଛି-ଏମିତି ସବୁ ଛୁଟି ମିଶାଇଲେ ବର୍ଷକରେ ପାଖାପାଖି ଦୁଇଶହରୁ ଅଧିକ ଦିନ ଛୁଟି ହୋଇଯାଉଛି-ବାକି ଯେଉଁ ଶହେ କି ଦେଢ଼ଶହ ଦିନ ରହିଲା ସେଥିରେ ମାଷ୍ଟରମାନେ କ'ଣ ବା ପିଲାମାନଙ୍କୁ ଘୋରି ବାଟି ପିଆଇ ଦେବେ ? ତେଣେ ପାଠ ପଢ଼ିବାକୁ ପିଲାଙ୍କର ଚେତା ପଶିଲା ବେଳକୁ ଇୟୁନିଭରସିଟିରୁ ପରୀକ୍ଷା ପ୍ରୋଗ୍ରାମ ବାହାରି ସାରିଲାଣି-ତା ପରେ କପି, ଛୁରାମାଡ଼, ଅଧ୍ୟାପକଙ୍କୁ ଘେରାଉ ଆଦି କେତେ କ'ଣ ସବୁ ଘଟି ଯାଉଛି-ତାହା ଆପଣ ନିଶ୍ଚେ ଖବର କାଗଜରୁ ପଢୁଥିବେ ।

ସମାଜ କ୍ଷେତ୍ରରେ ମଧ ସେହି କଥା-ସରକାରୀ ସ୍ତରରେ ନିୟମ କରାଯାଇଥିଲେ ବି ଖୋଲାଖୋଲି ଭାବରେ ଆଜି ଯୌତୁକ ଦିଆନିଆ ଚାଲିଛି । ନିଜ ଝିଅ ପାଇଁ ଯୌତୁକ ଦେବା ଅପରାଧ କହୁଥିବା ବ୍ୟକ୍ତି ପୁଅ ବାହାଘର ବେଳେ ଯୌତୁକ ପାଇଁ ଅଡ଼ି ବସୁଛି । ଫଳରେ କାଗଜ କଲମର ସେହି ଯୋଜନା ଦ୍ୱାରା କେତେ ଶିକ୍ଷିତା ସୁନ୍ଦରୀ ଝିଅ ବିବାହ ନକରି ବୟସର ପାହାଚ ଚଢ଼ି ବୁଢ଼ୀ ହେଉଛନ୍ତି-ଯଦି ବା କୌଣସି ପ୍ରଭାବର ଶିକାର ହୋଇ ବିବାହ କରୁଛନ୍ତି, ଉପଯୁକ୍ତ ଯୌତୁକ ଆଣି ନଥିବାରୁ ତାଙ୍କୁ କିରୋସିନି ଢ଼ାଳି ପୋଡ଼ି ଦିଆଯାଉଛି ବା ନିର୍ଯ୍ୟାତନା ସହି ନପାରି ଝିଅଟି ନିଜେ ଆତ୍ମହତ୍ୟା କରି ବସୁଛି ।

ଖାଲି ଯୌତୁକ ନୁହେଁ-ବିବାହ ପରି ପବିତ୍ର ବନ୍ଧନ ମଧ ଆଜି ଏକ ଫାର୍ସରେ ପରିଣତ ହେଲାଣି । ବାପ ମାଆ କେତେ ସହର, ଗାଁ ବୁଲି ବୁଲି ନିଜ ଝିଅ ପାଇଁ ଉପଯୁକ୍ତ ବର ଠିକ୍ କରନ୍ତି । କାରଣ ଝିଅ ତାଙ୍କର ଖୁସିରେ ଚଳିବ । କିନ୍ତୁ ,ବେଳେବେଳେ ବର ବାଣ ରୋଷଣୀ ଜାଳି ନିଜର ସାଙ୍ଗ ସାଥିଙ୍କୁ ଧରି କନ୍ୟା ଘରେ ପହଞ୍ଚିଲା ବେଳକୁ ଦେଖାଯାଉଛି, କନ୍ୟା ତାର ପ୍ରେମିକ ସହିତ ଉଡନ୍ ଛୁ । ବିଚରା ବରକୁ ଶିଶୁପାଳ ହୋଇ କର୍ମ ଆଦରି ଫେରିବାକୁ ପଡୁଛି ।

ନାରୀ ସ୍ୱାଧୀନତା ନାଁରେ ସ୍ୱେଚ୍ଛାଚାରିତା-ପରିବାର ନିୟନ୍ତ୍ରଣ କାର୍ଯ୍ୟକ୍ରମର କମ୍ ସନ୍ତାନ ସୁଖୀ ଜୀବନ ପରିବର୍ତ୍ତେ, ବେଶୀ ସନ୍ତାନ ଦୁଃଖୀ ଜୀବନ-ବୃକ୍ଷ ରୋପଣ ନାଁରେ ବୃକ୍ଷ କଟା, ଧର୍ମ ରକ୍ଷା ନାଁରେ ହିଂସାର ପ୍ରଚାର, ନିଶା ନିବାରଣ ନାଁରେ ନିଶା ପ୍ରସାରଣ ସହିତ ଧରାଧରି କରି ପ୍ରଭାବ ବିସ୍ତାର କରି ପୁରସ୍କାର ଗ୍ରହଣ ଆଦି କାର୍ଯ୍ୟକଳାପ ଆଜିର ସମାଜରେ ବଢ଼ି ବଢ଼ି ଚାଲିଛି-କଥାରେ ଅଛି ପରା ଚେଇଁ ଶୋଇଥିବ ଯିଏ, ତାକୁ ଉଠାଇବ କିଏ ? ଯଦି ଆମେ ସମସ୍ତେ ଏଥିପାଇଁ ସଚେତନ ନ ହେବା-ସରକାରଙ୍କର ନୀତି ସହିତ ସାମିଲ୍ ହୋଇ କାର୍ଯ୍ୟ ନ କରିବା, ତେବେ ସବୁ ଫସର ଫାଟି ଯିବ-ଆମେ ଖାଲି ଆଗତ ଚଢ଼େଇକୁ ବେସର ବାଟୁଥିବା-ଦେଶ ଯେଉଁଠି ଅଛି ସେଇଠି ରହିଥିବ-ସେଥିରେ ଆମର ଉନ୍ନତି ହେବ ନାଁ ଦେଶର-ଏଣୁ, ବେଳହୁଁ ସାଧୁ ସାବଧାନ । ❑❑❑

# କହି ଜାଣିଲେ

କଥା କହିବା ମଣିଷର ସହଜାତ ପ୍ରବୃତ୍ତି-ଏହା ମଣିଷ ସମାଜ ପାଇଁ ଭଗବାନଙ୍କର ଅମୂଲ୍ୟ ଦାନ । ମନର ଭାବ ପ୍ରକାଶ ପାଇଁ କଥା କହିବା ଏକ ମୁଖ୍ୟ ମାଧ୍ୟମ । ମଣିଷ ଯଦି କଥା କହି ପାରୁ ନଥାନ୍ତା ତେବେ ଅନ୍ୟ ପଶୁ ପକ୍ଷୀମାନଙ୍କ ପରି ନୀରସ ଜୀବନ ଯାପନ କରୁଥାଆନ୍ତା । ସେଥିରେ ରସ ନଥାନ୍ତା କି ହସ ନଥାନ୍ତା । ଅବଶ୍ୟ ଶୁଆଶାରୀ ଓ ବଣି ଆଦି ଚଢ଼େଇଙ୍କୁ ଯେତିକି କଥା ଶିଖା ଯାଇଥାଏ, ସେମାନେ କେବଳ ସେତିକି କଥା କୁହନ୍ତି । ଆମ ଭିତରୁ କେତେକ ଅନର୍ଗଳ ରସପୂର୍ଣ୍ଣ କଥା କହି ଅନ୍ୟମାନଙ୍କ ମୁହଁରେ ହସ ଫୁଟାଇଲା ବେଳେ ଆଉ କେତେକ ସେହି କଥାକୁ ଏପଟ ସେପଟ କରି କହି ଲୋକଙ୍କୁ ବିରକ୍ତ କରନ୍ତି । ଆଉ କେତେଜଣ ଜାଣି ନଥିବା କଥାକୁ ନିଜର ବାହାଦୂରୀ ଦେଖାଇ କହି ଦେଇ ଅଡୁଆରେ ପଡ଼ି ହଇରାଣ ହରକତ ହୁଅନ୍ତି । ସ୍ଥଳ ବିଶେଷରେ ଯେଉଁଠି ଯେଉଁ କଥା କହିବା କଥା ନୁହେଁ, ସେଠାରେ ସେ କଥା କହି ଲହୁ ଲୁହାଣ ହୁଅନ୍ତି । ସେଥିପାଇଁ କୁହାଯାଇଛି -

''କହି ନ ଜାଣିଲେ କଥା ଅଡୁଆ, ଧରି ନ ଜାଣିଲେ ସୂତା ଅଡୁଆ ।''

କଥା କହିବା ଏକ କଳା-ଏହା ସମସ୍ତଙ୍କ ଦେଇ ହୁଏ ନାହିଁ-ବା ସମସ୍ତେ ବନେଇ ଚୁନେଇ କଥା କହି ପାରନ୍ତି ନାହିଁ । କିନ୍ତୁ, ଯିଏ କଥା କହିବାର ବାକ୍ ଚାତୁରୀ ଜାଣିଛି ସିଏ ଅନ୍ୟମାନଙ୍କ ମନକୁ ମଜେଇ ପାରେ, ହଜେଇ ମଧ୍ୟ ପାରେ । ତାଙ୍କ କଥାର ଚାତୁରୀରେ ମୋହିତ ହୋଇ ପ୍ରଥମରୁ ଶୁଣିବାକୁ ଇଚ୍ଛା କରୁ ନଥିବା ଲୋକଟି ଖୁସି ହୋଇ ତାଳି ମାରେ-ବାହାବା କୁହେ-ମିଛକୁ ବି ସତ ମଣେ ।

ସେଥିପାଇଁ କୌଣସି କାମ ହାସଲ କରିବାର ଥିଲେ ପ୍ରଥମେ କହି ଜାଣିଥିବା ଲୋକଙ୍କୁ ଖୋଜା ଯାଏ । ସାଧାରଣ ସଭା ସମିତି ହେଉ ବା ନିର୍ବାଚନ ସଭା ହେଉ ପ୍ରଥମେ ସେଇମାନଙ୍କୁ ଖୋଜାଯାଏ-ସେମାନଙ୍କର ମନ୍ତ୍ରମୁଗ୍ଧ ଭାଷଣ ଶୁଣିବାକୁ ଲୋକଙ୍କର ଧାଡ଼ି ଛୁଟେ । ଆପଣ ଲକ୍ଷ୍ୟ କରିଥିବେ ଭଲ ବକ୍ତାଙ୍କ ଭାଷଣ ଶୁଣିବାକୁ କେମିତି ଲୋକମାନେ ହାଉଯାଉ ହୁଅନ୍ତି-କୁହାଳିଆ ଲୋକଟି ଭଲ ବକ୍ତା ହୁଏ ।

ଆଉ କେତେକ ଲୋକ ଅଛନ୍ତି, ଯେଉଁମାନେ ମାପିଚୁପି କଥା କୁହନ୍ତି । ସେମାନଙ୍କ ପାଟିରୁ ଗୋଟିଏ ବି କମ୍ କି ବେଶି ଶବ୍ଦ ବାହାରେ ନାହିଁ । ଆପଣ ଏ ପ୍ରକାର ଲୋକମାନଙ୍କୁ

କହି ପାରନ୍ତି, କିହୋ ଭଗବାନତ ପାଟି ଦେଇଛନ୍ତି, କଥା କହିବାକୁ-ତମେ କଥା କହିବାରେ ଏମିତି କଣ୍ଟ୍ରୋଲ କରୁଛ କାହିଁକି? କିନ୍ତୁ, କ'ଣ କରାଯିବ-ସିଏ ପରା ମଣିଷ ପ୍ରକୃତି-ଯାହାକୁ ଯାହା କରିଛି ଦଇବ, ତହୁଁ ନି କି ସେ ଅନ୍ୟଥା ହୋଇବ । ଏପରି ଲୋକମାନଙ୍କ କଥା ଶୁଣି ବଡ଼ବଡ଼ିଆମାନେ କହନ୍ତି-

''କଥା କହୁଥାଏ କେଉଁ ରସରେ, ମତେ ଲାଗୁଥାଏ ପରିହାସରେ ।''

ସବୁବେଳେ ଚୁପ୍ ରହିବା କ'ଣ ଭଲ କଥା ? ଆପଣ କହି ପାରନ୍ତି ଭଗବାନ ପରା ପାଟି ଦେଇଛନ୍ତି କଥା କହିବାକୁ-ମନ ଖୋଲି ହସିବାକୁ-ମୁଁ କଥା ନ କହିବି କିଆଁ ? ଆଜିର କଳି କାଳରେ ପରା ଠାକୁର ନିଜେ ନ ସପନେଇଲେ ପୂଜା ପାଉ ନାହାନ୍ତି-ଆଉ ମଣିଷ କେଉଁ ଗାଈର ଗୋବର ଯେ? ସେ ଯଦି ନିଜର ଭଲ ମନ୍ଦ, ଦୁଃଖ-ସୁଖ, ସୁବିଧା-ଅସୁବିଧା କଥା ମୁହଁ ଖୋଲି ନ କହିବ, ତେବେ ଅନ୍ୟ ଜଣେ କିପରି ସହଯୋଗର ହାତ ବଢ଼ାଇବ । କଥା କହିବା ମଣିଷର ଭୂଷଣ । ଯିଏ ଭଲ ଭଲ କଥା କହି ଅନ୍ୟର ମନକୁ ମଜେଇ ପାରେ ସେ ପାଏ ଆଦର-ତାକୁ ଲକ୍ଷ୍ୟ କରି କୁହାଯାଏ-

''କହି ଜାଣିଲେ କଥା ସୁନ୍ଦର, କାହୁଁ ଶିଖିଲ ଏତେ ଚୁନ୍ଦର ।''

ସତରେ କହି ଜାଣିଲେ କଥାର ସୌନ୍ଦର୍ଯ୍ୟ ବଢ଼େ-ଅବଶ୍ୟ କଥା କହି ଜାଣିଥିବା ଲୋକଙ୍କ ପଛରେ ଗପୁଡ଼ା, ପ୍ରଗଳଭ୍, କୁହାମୁଣ୍ଡା କପିଳା ଆଦି କେତେକ ବିଶ୍ଳେଷଣ ଯୋଡ଼ାଯାଏ-କିନ୍ତୁ, ସେମାନଙ୍କ ମୁହଁରେ କେହି କିଛି କହି ପାରନ୍ତି ନାହିଁ । କାରଣ ସେମାନଙ୍କର ବାକ୍ ଚାତୁରୀ ଓ ବାକ୍ ପଟୁତାରେ ମନ୍ତ୍ର ମୁଗ୍ଧ ହୋଇ ଆମେ ଅସଲ କଥାକୁ ଫେରିବାକୁ ଚାହିଁଲା ବେଳକୁ ସେମାନେ ଅନ୍ୟ କଥାର ଖିଅ ଯୋଡ଼ି ଦିଅନ୍ତି ।

ଅଧିକାଂଶ କୁହାଳିଆମାନଙ୍କର ମନ ସ୍ୱଚ୍ଛ ଓ ନିର୍ମଳ-ସେମାନେ କାହାର କିଛି କ୍ଷତି ଚାହାଁନ୍ତି ନାହିଁ କି କରନ୍ତି ନାହିଁ । ଯାହା ନିଜ କାନରେ ଶୁଣନ୍ତି ଆଉ ଆଖିରେ ଦେଖନ୍ତି, ସେହି କଥା ଅନ୍ୟମାନଙ୍କୁ କହି ଆତ୍ମ ସନ୍ତୋଷ ଲାଭ କରନ୍ତି- କୌଣସି ଛନ୍ଦ କପଟ ନରଖି ଖୋଲଖା ସତ କହିବା ଦ୍ୱାରା ଲୋକେ ଏମାନଙ୍କୁ ଅଲଗା ଭାବରେ ଦେଖୁଥିଲେ ମଧ୍ୟ ସେମାନଙ୍କର ସେ ପ୍ରତି ଭ୍ରୂକ୍ଷେପ ନଥାଏ । ସେମାନଙ୍କ ଦୃଷ୍ଟିରେ କହିଦେଲା କଥା ଆଉ ବୋହିଗଲା ପାଣି ଭିତରେ କୌଣସି ଫରକ ନଥାଏ । ତେଣୁ, ପ୍ରଥମେ ଆମକୁ କୁହାଳିଆ ଲୋକଙ୍କୁ ଚିହ୍ନିବାକୁ ପଡ଼ିବ-ସେମାନଙ୍କର ଗୁଣଗାରିମା, କାମ ଦାମ ଜାଣିବାକୁ ହେବ-ନଚେତ୍ ଅନ୍ୟମାନଙ୍କ ପରି ଆମକୁ ମଧ୍ୟ ଧୋକା ଖାଇବାକୁ ହେବ-ତେବେ ଆସନ୍ତୁ, କହି ଜାଣିଲା ଲୋକଙ୍କର କୁହାଳିଆ ପଣର ଛୁଆଁମାଛି ପରୀକ୍ଷା କରିବା ।

କହି ଜାଣିଲେ ସବୁ କାମ ଠିକ୍ ଭାବରେ ହାସଲ କରିହୁଏ-କହି ନ ଜାଣିଲେ ଓଷଦ ରାଗରେ ତାଟିଆ କାମୁଡ଼ିବା ସାର ହୁଏ-ମାରିନେଲେ ମହାପାତ୍ରେ ଚାହିଁଆ'ରେ

ଢଳକା ପରି ଆପଣ ବଲବଲ କରି ଚାହିଁଥିବେ-ଚିକ୍କଣ ଚାକଣ ମନଛୁଆଁ କଥା କହି ଆଉ ଜଣେ କାମ ହାସଲ କରି ନେବ । କହି ଜାଣିଲେ ପାଣିରେ ମଧ ସର ପକାଇ ହୁଏ ।

ବେପାରୀମାନେ କୁହାଳିଆ ପଣରେ ପୁରାପୁରି ଧୂରନ୍ଧର । ସେମାନେ କହି ବୋଲି ବା ବଡ଼ ପାଟିରେ କଥାର ଭେଳିକି ଲଗାଇ ଦେଇ ଖରାପ ଜିନିଷକୁ ମଧ ଭଲ କହି ବିକି ଦେଇ ପାରନ୍ତି । ଯେଉଁ ବେପାରୀ ଯେତେ ମନଛୁଆଁ କଥା କହି ପ୍ରଭାବିତ କରିପାରେ, ସେତେ ଶିଘ୍ର ତା'ର ପୋକା, ପଚା ବା ଖରାପ ଜିନିଷ ବିକ୍ରି ହୋଇଯାଏ । ଆଉ କଥା କହି ଜାଣି ନଥିବା ବେପାରୀର ସଜ ଓ ତଟକା ଜିନିଷ ସେମିତି ପଡ଼ି ରହେ । ସେଥିପାଇଁ ବଡ଼ ବଡ଼ ବ୍ୟବସାୟୀମାନେ ଭଲ କହି ବୋଲି ପାରୁଥିବା ସେଲ୍‌ସମ୍ୟାନ ନିଯୁକ୍ତ କରନ୍ତି-ଏହାକୁ ଲକ୍ଷ୍ୟକରି କୁହାଯାଇଛି-

" କହି ବୋଲି ପାରେ ଯେ, ପଚା ଚିଙ୍ଗୁଡ଼ି ବିକେ ସେ ।"

କୌଣସି ଡାକ୍ତରଖାନାକୁ ଗଲେ ଆପଣ ଦେଖିବେ ଜଣେ ଡାକ୍ତରଙ୍କ ପାଖରେ ଲମ୍ବା ଧାଡ଼ି ଲାଗିଥିଲା ବେଳେ, ଅନ୍ୟ ଜଣେ ଡାକ୍ତର ବସି ମାଛି ଘଉଡାଉଥିବେ-ଏଠି ମଧ ସେହି କହି ଜାଣିବାର ରହସ୍ୟ ଆଉ ମହତ୍ତ୍ୱ-ଯେଉଁ ଡାକ୍ତର ହସି କରି ରୋଗୀଙ୍କୁ କଥା କହିଲେ, ରୋଗର କାରଣ, ସୁବିଧା-ଅସୁବିଧା ସବୁ ଧୈର୍ଯ୍ୟର ସହିତ ରୋଗୀ ଠାରୁ ଶୁଣିଲେ ଓ ଶୀଘ୍ର ଆରୋଗ୍ୟ ହେବାର ଆଶ୍ୱାସନା ବାଣୀ ଶୁଣାଇଲେ-ତାଙ୍କ ପାଖରେ ରୋଗୀଙ୍କର ଭିଡ଼ । ଆଉ ଯେଉଁ ଡାକ୍ତର ରୋଗୀଙ୍କୁ ଚିଡିଲେ, ନାକ ଟେକିଲେ-ତାଙ୍କ ପାଖକୁ କେହି ଗଲେ ନାହିଁ-ସିଏ ମାଛି ଘଉଡେଇବେନି ତ ଆଉ କ'ଣ ମଣିଷ ଗୋଡେଇବେ । ଏ ପ୍ରକାର ଲୋକଙ୍କ ପ୍ରତି ଲକ୍ଷ୍ୟରଖି କୁହାଯାଇଛି-

"କାହା ମୁହଁରେ ଯୂଇ ଫୁଟେ ତ, ଆଉ କାହା ମୁହଁରେ ମଦରଙ୍ଗା ଛୁଟେ ।"

ସେମିତି ଓକିଲମାନେ ଏମିତି କଅଁଳ କଥା କହି, ମନ ମୋହି ନିଅନ୍ତି ଯେ ମହକିଲମାନେ ଭାବନ୍ତି ଜିତାପଟ ହିଁ ତାଙ୍କ ସପକ୍ଷରେ ଯିବ-କିନ୍ତୁ, କେଶ୍ ଫଇସଲା ହେଲା ବେଳକୁ ଫଳ ଓଲଟା-ମହକିଲ ବିଚରା କାନମୁଣ୍ଡା ଆଉଁସି କୁହେ, କହୁ ଯେଡ଼େ ନୋହୁଁ ସେଡେ ।

କହି ଜାଣିଲେ ସବୁ ଅସମ୍ଭବ ସମ୍ଭବ ହୁଏ-ବଡ଼ ବଡ଼ ଗଣ୍ଡଗୋଳ ସମସ୍ୟା ବା ହରତାଳ ଏହି କୁହାଳିଆମାନଙ୍କ ଦ୍ୱାରା ହିଁ ସମାଧାନ ହୁଏ-କହି ଜାଣିବା ଲୋକର କଥାରୁ ଏମିତି ମହୁ ଝରେ ଯେ, ଅସନ୍ତୁଷ୍ଟ ମାନେ ଖୁସି ହୋଇଯାଇଥାନ୍ତି-କଥା କହି ଜାଣିଲେ ଲୋକଙ୍କୁ ମତେଇ ହୁଏ, ତତେଇ ମଧ ହୁଏ-ବେଳ ପଡ଼ିଲେ ଲୋକଙ୍କୁ ମଧ ସନ୍ତୁଷ୍ଟ କରି ହୁଏ- କେଉଁଠି କୁହାଳିଆମାନେ ବାହାଘର ଛୁଟେଇ ଦେଇ ପୁଅଝିଅଙ୍କୁ କୂଳରେ ଲଗାଇ ଦିଅନ୍ତି ତ ଆଉ କେଉଁଠି ଗରିବମାନଙ୍କ ପାଇଁ ଧନୀମାନଙ୍କ ଠାରୁ

ସାହାଯ୍ୟ ଓ ସହଯୋଗ ଆଦାୟ କରିଦିଅନ୍ତି । ନେତାମାନଙ୍କର କହିଲା ପଣିଆ କେତେ ବେଶୀ, ତାହା ତ ସମସ୍ତେ ଜାଣନ୍ତି-ନିର୍ବାଚନ ଆସିଲେ ଭାଷଣର ମାୟାଜାଲରେ ଭୋଟରଙ୍କୁ ଏମିତି ଛନ୍ଦି ଦିଅନ୍ତି ଯେ, ସେମାନେ ସେଥିରୁ ମୁକୁଳି ପାରନ୍ତି ନାହିଁ ।

କହି ଜାଣିଲା ଲୋକ ଏତେ କଳା ଓ କୌଶଳ ତାଙ୍କ ଛୋଟିଆ ମଗଜ ଭିତରେ କେଉଁଠି ସାଇତି ରଖି ଥାଆନ୍ତି, ତାହା ସେଇମାନଙ୍କୁ ହିଁ ଜଣା । ତାଙ୍କ ଭିତରୁ କେତେକ ଉଡ଼ିଗଲା ଚଢ଼େଇର ପର ଗଣି ପାରନ୍ତି-ଆଉ କେତେକ ଏ ଘର ମାଉସୀ, ସେ ଘର ପିଉସୀ ଦାୟିତ୍ୱଟିକୁ ଖୁବ୍ ସଫଳତାର ସହିତ ତୁଲେଇ ପାରନ୍ତି-ଜଣକ ଠାରୁ କଥା ନେଇ ଅନ୍ୟ ଜଣକ ଆଗରେ କହି କଳି ମଧ୍ୟ ଲଗାଇ ପାରନ୍ତି-ଆଉ କହିଲା ଲୋକ ଏମିତି ନାକରେ କାଠି ପୂରାଇ ଛିଙ୍କନ୍ତି ଯେ, ଯେମିତି ସେ କିଛି ଜାଣି ନାହାନ୍ତି-ଗୋଟି ପଣ ତୁଳସୀ ।

କୁହାଳିଆମାନେ ଅବାଧରେ ସବୁଠିକୁ ଯାଇ ପାରନ୍ତି । କାମର ଭେଳିକି ଲଗେଇ ସମସ୍ତଙ୍କ ଗୁମର କଥା ଆଦାୟ କରି ନିଅନ୍ତି । ତାଙ୍କ କଥା ପଚାରିଲା ବେଳକୁ କଥାର ମୋଡ଼ ଏପରି ଘୂରାଇ ଦିଅନ୍ତି ଯେ, ଆପଣ ଅସଲ କଥା ଭୁଲି ତାଙ୍କ କଥାରେ ହସୁଥିବେ କିମ୍ବା ମୁଣ୍ଡ ଟୁଙ୍ଗାରୁଥିବେ । ଆଉ କେତେକ କୁହାଳିଆଲୋକ ଅଛନ୍ତି ଯେଉଁମାନେ ଉପରେ ହସି ହସି କଥା କହିଲେ ମଧ୍ୟ ଭିତରେ ଭିତରେ ଚେର କାଟୁଥାନ୍ତି । ବାଘ ଆଉ ବକରୀଙ୍କୁ କଥାର ମାୟାଜାଲରେ ଛନ୍ଦି, ଏକା ତୁଠରେ ପାଣି ପିଆଇ ପାରନ୍ତି । ଆଗରେ ବଡ଼ ପାଟି କରି ସତ୍ୟ, ନ୍ୟାୟ କଥା କହୁଛନ୍ତି ବୋଲି ଧେଣ୍ଡୁରା ପିଟିଲେ ମଧ୍ୟ, ପଛରେ ଯାଇଁ ସାଲିସ୍ କରି ନିଜ ସ୍ୱାର୍ଥ ହାସଲ କରନ୍ତି । ଢେଙ୍କିଶାଳରୁ ଢେଙ୍କାନାଳ ଯାଏ ସବୁ କଥା ତାଙ୍କ ଜିଭ ଅଗରେ ଥୁଆ । ଯେତେ ଅସୁବିଧା ଆଉ କଷ୍ଟ କାମ ହୋଇଥିଲେ ମଧ୍ୟ ସେମାନେ, ସେ ସବୁକୁ ପାରି ହୋଇ ନିଜର ସୁବିଧା ହାସଲ କରି ନିଅନ୍ତି-ଭିଡ଼ ବସ୍‌ରେ ସେମାନଙ୍କୁ ବସିବାକୁ ସିଟ୍ ମିଳେ-କଣ୍ଟ୍ରୋଲ ସାମଗ୍ରୀ ବା ସାଧାରଣ ବଣ୍ଟନ ଜାଗାରେ ଲମ୍ୱା ଲାଇନ୍ ଲାଗିଥିଲେ ମଧ୍ୟ ସେମାନଙ୍କୁ ଆଗ ସୁଯୋଗ ମିଳେ-ପକେଟ୍‌ରେ ଟଙ୍କା ନଥିଲେ ସହଜରେ ଋଣ ବା ସାହାଯ୍ୟ ମିଳେ । କେଉଁଠି କେଉଁଠି ନିଜ ପାଇଁ ବା ନିଜ ପରିବାର ବା ନିଜ ଅନୁଷ୍ଠାନ ପାଇଁ ସରକାରୀ/ବେସରକାରୀ ସାହାଯ୍ୟ କଥା କହି ଏପରି ଯୋଗାଡ଼ କରିପାରନ୍ତି ଯେ ଅନ୍ୟମାନେ ତାହା ଦେଖି ତଟସ୍ଥ ହୋଇଯାଆନ୍ତି । ଏହି ଶ୍ରେଣୀର ଲୋକମାନଙ୍କ ପାଇଁ କେଉଁଠି କେଉଁଠି ବିରାଟ ବିରାଟ ଅନୁଷ୍ଠାନ ମୁଣ୍ଡ ଟେକି ଉଠେ । ଏମାନେ ମଧ୍ୟ ବଡ଼ ବଡ଼ ଗଣ୍ଡଗୋଳକୁ ଏପରି ମିଠା ମିଠା କଥା କହି ତୁଟାଇ ଦିଅନ୍ତି ଯେ ଲୋକ ତାହା ଦେଖି ତଟସ୍ଥ ହୋଇଯାଆନ୍ତି । ଏମିତିକି ଗଣ୍ଡଗୋଳ କରୁଥିବା ମଣିଷଟି ମଧ୍ୟ କଥାର ମାୟାଜାଲରେ ଏପରି ଛନ୍ଦି ହୋଇଯାଏ ଯେ ଆଉ ଏପରି ଗଣ୍ଡଗୋଳ କରିବ ନାହିଁ ବୋଲି ସେହିଠାରେ ଶପଥ କରି ବସେ । ତେଣୁ କୁହାଳିଆ ମାନଙ୍କର କରିସ୍ମା କଥା ଯେତେ ବଖାଣିଲେ ମଧ୍ୟ ସରିବ ନାହିଁ ।

ସମୟ ଥିଲା କହିଲା ଲୋକଙ୍କର ସମାଜରେ ଆଦର ଥିଲା-ବୀରବଲ ଆଉ ଯଦୁମଣିଙ୍କ ପରି ଚତୁର ଲୋକମାନଙ୍କୁ ସମ୍ମାନ ଦିଆଯାଉଥିଲା-କହିଲା ଲୋକର ସତର୍କ ବାଣୀ ଶୁଣି ସମସ୍ତେ ସଚେତନ ହୋଇ, ନିଜର ଦୋଷତ୍ରୁଟି ସଜାଡ଼ି ନେଉଥିଲେ-ଫଳରେ ସମାଜରେ ସୁଖ-ଶାନ୍ତି ବିରାଜମାନ କରୁଥିଲା-କିନ୍ତୁ, ଆଜି ସବୁ ବଦଳି ଗଲାଣି-ଆଜି ଆଗପରି କଥା ସାଗର ନାହାନ୍ତି, କି ମୁହେଁ ମୁହେଁ କହିବା ଲୋକ ନାହାନ୍ତି-ଯିଏ ବା ଆଜି କିଛି  କହିବାର ଦେଖା ଯାଉଛି, ସେ ତା' ନିଜ ସ୍ୱାର୍ଥ ପାଇଁ ଅଧିକ କହୁଥିବାର ଦେଖା ଯାଉଛି-ଯିଏ ନ କହୁଛି ସିଏ ଭଲ ପାଇଁ କହୁ ନାହିଁ କି ମନ୍ଦ ପାଇଁ କହୁ ନାହିଁ-ବାଘର ଫାଗକୁ ଡର ପରି ସମସ୍ତେ ଆଜି ସମସ୍ତଙ୍କୁ ଭୟ କରୁଛନ୍ତି-ଛାତ୍ର-ଶିକ୍ଷକ, କର୍ମଚାରୀ-ଅଫିସର, ଚୋର-ପୁଲିସ୍, ମନ୍ତ୍ରୀ-ଜନତା ପରସ୍ପର ପରସ୍ପରକୁ ଭୟ କରୁଛନ୍ତି -ଏଣୁ କିଏ ବା କାହାକୁ କହିବ ? ମାନିବ କିଏ ? ସମସ୍ତେ ତ ନିଜ ହାତରେ ନିଜେ ଚଉଦ ପା-ଅନ୍ୟାୟ ଦେଖି କେହି ଆଜି ମୁହଁ ଖୋଲୁ ନାହାନ୍ତି-ଆପେ ବଞ୍ଚିଲେ ବାପର ନାଁ ନୀତିବାଣୀଟିକୁ ଆପଣେଇ ନେଇ କହିଲା ଲୋକେ ଆଜି ଚୁପ୍ ହୋଇ ବସୁଛନ୍ତି ।

ସେଥିପାଇଁ ସମାଜରେ ଚୋରୀ, ଡକାୟତି, ହିଂସା, ଲୁଟ ତରାଜ, ପୋଡ଼ା ଜଳା, ହରଣଚାଳ, ରାଜନୈତିକ ଭ୍ରଷ୍ଟାଚାର, ଶୋଷଣ, ବାଟମାରଣା ଆଦି ନାନା ଅନୈତିକ କାର୍ଯ୍ୟ ବଢ଼ି ବଢ଼ି ଚାଲିଛି । କେତେ ଦିନ  ଆମେ ଏ ସବୁ ଦେଖି ନ ଦେଖିବାର ଛଳନା କରିବା-ସମୟ ଆସିବ ତା ବିରୁଦ୍ଧରେ ସମସ୍ତେ ନିଶ୍ଚୟ ମୁହଁ ଖୋଲିବେ-କହିବା ଲୋକ କହିବ-ନ କହିବା ଲୋକ ବି କହିବ-ତେବେ ଯାଇଁ ଦେଶରୁ ଅନ୍ୟାୟ ଓ ଦୁର୍ନୀତି ଲୋପ ପାଇବ-କଳିକାଳର ବିଲୋପ ଘଟିବ-ଧରାରେ ରାମରାଜ୍ୟ ବା ଗାନ୍ଧୀବାଦର ପ୍ରତିଷ୍ଠା ହେବ-ଏଣୁ, ବେଳହୁଁ ସାଧୁ  ସାବଧାନ ।



# ସୁବିଧାବାଦୀ ସପକ୍ଷରେ

ସୁଖ ଆଉ ଦୁଃଖ-ମଣିଷ ଜୀବନର ଦୁଇଟି ମୁଖ୍ୟ ଘଟଣା । ଋତୁ ପରିବର୍ତ୍ତନ ପରି ଏମାନେ ଗୋଟିକ ପରେ ଗୋଟିଏ ଆସନ୍ତି-ପୁଣି ହସି ଖେଳି ବିଦାୟ ନିଅନ୍ତି । ମାତ୍ର, ମଣିଷର ସେଥି ପ୍ରତି ଆଦୌ ଲକ୍ଷ୍ୟ ନଥାଏ । ଏହାକୁ ଦୃଷ୍ଟିରେ ରଖି ବଡବଡିଆମାନେ କହି ଯାଇଛନ୍ତି-''ଆଜି ଯେ ରାଜେନ୍ଦ୍ରାସନେ, କାଲି ସେ ଫକୀର ।'' କିନ୍ତୁ, ଆମ ଭିତରୁ କେତେକ ଜାଣି ସିଆଣିଆ ମଣିଷ, ସୃଷ୍ଟିକର୍ତ୍ତାଙ୍କର ଏହି ଜୀବନ ରହସ୍ୟକୁ ମୋଟେ ବୁଝନ୍ତି ନାହିଁ । ସେମାନେ ଜାଣନ୍ତି ନାହିଁ ଯେ-''ମଣିଷ ଜୀବନ କେତେବେଳେ ପଥର ତଳେ ତ, ପୁଣି କେତେବେଳେ ପତର ତଳେ ।'' ସେମାନଙ୍କ ସାରଦିଆ ଉର୍ବର ମସ୍ତିସ୍କରେ ଏ ସବୁ ଗହନ କଥା ପଶେ ନାହିଁ । ସେଥି ପାଇଁ ସେମାନେ ସୁଖ ନାମକ ସୁନାର ମାୟା ହରିଣୀ ପଛରେ ଗୋଡ଼ାଉ ଗୋଡ଼ାଉ,କେତେବେଳେ ଯେ ଅସୁଖ ଆଉ ଅଶାନ୍ତିର ଅଂଧାରୀ ଗୁହା ଭିତରକୁ ଚାଲି ଯାଆନ୍ତି-ତାହା ନିଜେ ଜାଣି ନ ପାରି ଅଯଥାରେ ଯାହା ଲହୁ ଲୁହାଣ ହୁଅନ୍ତି ।

ଏମାନଙ୍କ ମନରେ ସବୁବେଳେ ଆପେ ବଞ୍ଚିଲେ ବାପର ନାଁ କଥାଟି ବସା ବାନ୍ଧିଥାଏ । 'ନିଜେ ଥିଲେ ଯୁଗ ଯାଏ, ପର ପାଇଁ କାନ୍ଦୁଥାଏ' ନୀତିଟିକୁ ହାତ ବାରିସ୍ କରି ଏହି ଶ୍ରେଣୀର ମଣିଷମାନେ ନିଜର ଜୀବିକା ଓ ଜୀବନ ଚଳାନ୍ତି-ସୁଖ ସୁବିଧା ହାସଲ କରନ୍ତି । ସବୁବେଳେ ନିଜ କଥା ଓ ନିଜ ପିଲାପିଲିଙ୍କ ସୁଖ ସୁବିଧା କଥା ଚିନ୍ତା କରନ୍ତି । ଏଇ ଧରଣର ଲୋକମାନଙ୍କୁ ହିଁ ଆମେ ସୁବିଧାବାଦୀ କହିଥାଉ । ଅନ୍ୟ କଥାରେ ଏମାନଙ୍କୁ ସ୍ୱାର୍ଥପର, ମଲାଙ୍ଗ, ପରାଙ୍ଗପୁଷ୍ଟ ବି କୁହାଯାଏ ।

କିନ୍ତୁ ଆଜିକାଲି ସୁବିଧାବାଦୀ ଶବ୍ଦଟି ବେଶୀ ପ୍ରଚଳିତ । ଏହାକୁ ଗାଁର ମଳିମୁଣ୍ଡିଆ ଶ୍ରମିକ ଠାରୁ ଆରମ୍ଭ କରି ସହରର ବଡ଼ବଡ଼ିଆ ହାକିମହୁକୁମା ସମସ୍ତେ ପ୍ରୟୋଗ କରୁଛନ୍ତି । ତେବେ ଏହି ସୁବିଧାବାଦ କ'ଣ ? ସେ କଥାଟିକୁ ମୁଁ ଆପଣମାନଙ୍କୁ ଭଲ ଭାବରେ ବୁଝେଇ ଦେଉଛି । ଲୋକେ କହୁଛନ୍ତି ଏ ଯୁଗରେ ସୁବିଧାବାଦୀ ନହେଲେ ଆଉ ଚଳି ହେବ ନାହିଁ-କାରଣ, ଆଜିକାଲି ସମସ୍ତେ ନିଜ ସୁଖସୁବିଧା ପାଇଁ କାମ କରି ଲାଭବାନ ହେଉଛନ୍ତି- ଆଉ ଆମେ ନିଜ ସୁଖସୁବିଧା କଥା ନଭାବି, ଖାଲି ଯାହା

ହଇରାଣ ହରକତ ହୋଇ ମନସ୍ତାପରେ କାଳାତିପାତ କରୁଛୁ । କିଏବା ଜାଣିଛି, ଏପରି ମନ୍ତବ୍ୟ ଦେଉଥିବା ବ୍ୟକ୍ତି ନିଜ ସୁଖସୁବିଧା ପାଇଁ, ସୁବିଧାବାଦକୁ ଆଦରି ନେଇ ନାହାନ୍ତି ବୋଲି । ସତରେ, ଜଣେ ଯେତେ ସଚ୍ଚା, ସତ୍ୟନିଷ୍ଠ ବ୍ୟକ୍ତି ହୁଅନ୍ତୁ ନା କାହିଁକି- ସେ କ'ଣ କେବେ ହଲପ୍ କରି କହି ପାରିବ ଯେ, ନିଜର ସୁଖସୁବିଧା ପାଇଁ ସେ ସୁବିଧାବାଦକୁ ଆପଣେଇ ନେଇ ନାହିଁ ବୋଲି-ନା କେବେ ନୁହେଁ-ସେ ନିଶ୍ଚୟ ଥରେ ଅଧେ ସୁବିଧାବାଦକୁ ଆଦରି ନେଇଥିବ । ଅତି ଲେମ୍ବୁ ଚିପୁଡ଼ିଲେ ପିତା ପରି, ସୁବିଧାବାଦକୁ ସବୁବେଳେ ସବୁ କ୍ଷେତ୍ରରେ ପ୍ରୟୋଗ କରୁଥିବା ବ୍ୟକ୍ତିଟିକୁ ଆମେ ସୁବିଧାବାଦୀ କହିଥାଉ । ସମସ୍ତେ କିନ୍ତୁ, ସୁବିଧାବାଦୀ ହୋଇପାରିବେ ନାହିଁ । କାରଣ ସୁବିଧାବାଦ ହେଉଛି ଏକ କଳା-ଯିଏ, ଏଇ କଳା ନେଇ ଜନ୍ମ ଗ୍ରହଣ କରିଛି, ସେ ହିଁ ତାକୁ ନେଇ ଆଣି ଠିକ୍ ଭାବେ ଥୋଇ ପାରିବ ।

ଗଣିତର ବିଭିନ୍ନ ଫର୍ମୁଲା ପରି, ଏମାନେ ମଧ୍ୟ ନିଜର ସୁବିଧା ହାସଲ ପାଇଁ ବିଭିନ୍ନ ପ୍ରକାର ଫର୍ମୁଲା ବା କଳାକୌଶଳ ପ୍ରୟୋଗ କରନ୍ତି । ସବୁବେଳେ ସବୁ ପ୍ରକାର ସୁବିଧା ହାସଲ ପାଇଁ ଗୋଟିଏ ଫର୍ମୁଲା କାମ କରେ ନାହିଁ ବୋଲି ସେମାନେ ଭଲ ଭାବେ ଜାଣିଥାନ୍ତି । ସେମାନଙ୍କର ଗୋଟିଏ ପ୍ରଧାନ କୌଶଳ ହେଲା ମେଘ ଯୁଆଡ଼େ, ଛତା ସିଆଡ଼େ ଦେଖାଇବା ପ୍ରବୃତ୍ତି । ଦରକାର ପଡ଼ିଲେ ନିଜର ସୁବିଧା ହାସଲ ପାଇଁ, ଏମାନେ ଅନ୍ୟମାନଙ୍କ ସଙ୍ଗେ କଳିଝଗଡ଼ା କରି ଶତ୍ରୁ ହୋଇଯାଆନ୍ତି-ପୁଣି ନିଜର କିଛି କାମ ପଡ଼ିଲେ, ସେମାନଙ୍କ ହାତଗୋଡ଼ ଧରି ଭୁଲ ମାଗନ୍ତି । ଏମାନଙ୍କର ଏହି ଛଳନା ଓ ଶଠତାକୁ ଦେଖି ସମସ୍ତେ ମୁରୁକି ମୁରୁକି ହସି ସେମାନଙ୍କୁ ଥଟ୍ଟା କରନ୍ତି ।

ସୁବିଧାବାଦୀମାନଙ୍କର କଥା ସବୁ ପାଣିର ଗାର ପରି-ଅନ୍ୟ ଭାଷାରେ କହିଲେ ଏମାନେ ହେଲେ ବୋରଝାଞ୍ଜି ଦଳ-ଏମାନଙ୍କର ନୀତି ଓ ଆଦର୍ଶ ବୋଲି କିଛି ନଥାଏ-ମୁହଁରେ ବି ଲାଜସରମ ଟିକେ ନଥାଏ । ଏମାନଙ୍କୁ ଆପଣ ନିର୍ଲଜ, ନିଲଠା ଯାହାବି କହି ପାରନ୍ତି । ମାତ୍ର, ସେମାନଙ୍କର ଏଥି ପ୍ରତି ନିଘା ନଥାଏ । କାରଣ, ସ୍ୱାର୍ଥର ଭୂତ ଏମାନଙ୍କ ମୁଣ୍ଡରେ ସବାର ହୋଇଥାଏ ।

ସୁବିଧାବାଦୀମାନଙ୍କୁ ଆପଣ ଯେତେ ଗାଳି ଦିଅନ୍ତୁ-ଦୂର୍ ଦୂର୍ ମାର୍ ମାର କହି ପାଖରୁ ତଡ଼ି ଦିଅନ୍ତୁ ପଛେ-ସେ ଗାଳି କି ସେ କଟୁ କଥା ସେମାନଙ୍କ ଲୁହା ହାତୁଡ଼ି ପରି ଟାଣୁଆ ହୃଦୟକୁ ଆଦୌ କାଟୁ କରେ ନାହିଁ । ବରଂ, ସେମାନେ ସେଥିପ୍ରତି କର୍ଣ୍ଣପାତ ନ କରି, ନିଜର ସ୍ୱାର୍ଥ ହାସଲ ପାଇଁ ଆପଣଙ୍କୁ ଆହୁରି ଖୋସାମଦ୍ କରିବେ-ଆହୁରି ତେଲ ମାଲିସ୍ କରିବେ । ସେମାନେ ମନେ ମନେ ଭାବନ୍ତି ତାଙ୍କର ଏ ଗୁଣ ଗାରିମା-କୀର୍ତ୍ତିକଳାପକୁ କେହି ଦେଖି ପାରୁ ନାହାନ୍ତି କି ଜାଣି ପାରୁ ନାହାନ୍ତି ବୋଲି । ମାତ୍ର, ଲୁଚିଛି ନା ମୋ ଗୋଡ଼ ଦିଇଟା ଦିଶୁଛି ନ୍ୟାୟରେ ସେମାନଙ୍କର ସମସ୍ତ କୀର୍ତ୍ତି କଳାପ, ଗୁଣ ଗାରିମା ହାଟରେ ପଡ଼ି ଦାଣ୍ଡରେ ଗଡ଼ ଗଡ଼ ହେଉଥାଏ ।

ସୁବିଧାବାଦୀମାନଙ୍କୁ ବେଳେବେଳେ ଚିହ୍ନିବା ବଡ଼ କଷ୍ଟ ହୋଇ ପଡ଼େ । କାରଣ ଏମାନେ କେତେବେଳେ ଏ ଘର ମାଉସୀ ତ ପୁଣି କେତେବେଳେ ସେ ଘର ପିଉସୀ- ଆ କଥା ନେଇ ତା ଆଗରେ, ପୁଣି ତା କଥା ଆଣି ଆ ଆଗରେ କହିବା କାମଟିକୁ ଏମାନେ ଭଲଭାବେ ନେଇ ଆଣି ଥୋଇ ପାରନ୍ତି । ଦୁଇଜଣଙ୍କ ମଧ୍ୟରେ କଳି ଲଗାଇ କିପରି ନିଜର ଫାଇଦା ହାସଲ କରିବେ, ସେଥିପାଇଁ ସେମାନଙ୍କୁ ରାତିରେ ନିଦ ନଥାଏ କି ଦିନରେ ଭୋକ ନଥାଏ । ବେଳେବେଳେ ଏମାନେ ଲୋକମାନଙ୍କୁ ମିଛ ଆଶ୍ୱାସନା ଦେଇ କୁହନ୍ତି, ''ତୁମ ପାଇଁ ଏଇଟା କରି ଦେବି, ସେଇଟା ଆଣି ଦେବି । ମୋ ନିଜ କାମ ପଛେ ନ ହେଲେ ନ ହେଉ ।'' ମାତ୍ର, ଅସଲ କାମ ବେଳକୁ ଏମିତି ଗଳି ପୋଛି, କେଉଁ ଛଟକରେ କେବଳ ନିଜ କାମ କରି ଆଣିବେ ଯେ ତାହା ଅନ୍ୟ କେହି ଜାଣି ପାରିବେ ନାହିଁ । ପୋଷା ଶୁଆ ପରି ଏମାନେ ମନେ ମନେ କୁହନ୍ତି-

''ତୋ କଥା କରିବି, ମୋ କଥା କରିବି, ତୋ କଥା ହୃଦର ଗାର,
ସମୟ ପଡ଼ିଲେ ମୋ କଥା କରିବି-ତୋ କଥା ପାଣିର ଗାର ।''

କଥାରେ ଅଛି ପରା, ଅଙ୍ଗାରକୁ ଯେତେ କ୍ଷୀରରେ ଧୋଇଲେ ବି ସେ କେବେ ତାର ରଙ୍ଗ ଛାଡ଼ି ପାରେ ନାହିଁ । ସେମିତି ସୁବିଧାବାଦୀ ମଣିଷ ମାନେ, ଯେତେ ଶିକ୍ଷା ଦୀକ୍ଷା ପାଆନ୍ତୁ ନା କାହିଁକି, ନିଜର ପ୍ରକୃତିକୁ ଛାଡ଼ି ପାରନ୍ତି ନାହିଁ । ଉଦାହରଣଟିଏ ଦେଖନ୍ତୁ । ମନେକର ସୁବିଧାବାଦୀ ମଣିଷଟିର ବ୍ୟାଙ୍କରୁ ଟଙ୍କା ଉଠାଇବାର ଅଛି-ସେ ବ୍ୟାଙ୍କରେ ପହଞ୍ଚି ଦେଖିଲେ କାଉଣ୍ଟରରେ ଲମ୍ବା ଲାଇନ ଲାଗିଛି । ଏହା ଦେଖି ବାବୁଙ୍କ ମନ ଖଟା ହୋଇଗଲା । ସେ ମନେ ମନେ ଭାବିଲେ, ଯଦି ଏବେ ଲାଇନ୍‌ରେ ଛିଡ଼ା ହେବେ ତେବେ ଅନେକ ଲୋକଙ୍କ ପରେ ତାଙ୍କ ପାଳି ପଡ଼ିବ । ସମୟ ବି ବରବାଦ ହେବ । ଏତେ ସମୟ ଛିଡ଼ା ହେବାକୁ ତାଙ୍କର ବା ବେଳ କାହିଁ ? ସେଇଠୁ ବାବୁଙ୍କର ଧୂର୍ତ ଓ ତୀକ୍ଷଣ୍ ଆଖି ଲାଇନ୍‌ରେ ଛିଡ଼ା ହୋଇଥିବା ଲୋକମାନଙ୍କ ଉପରେ ଥରେ ଘୂରି ଆସିଲା । ଯଦି କେହି ପରିଚିତ ଲୋକ ଥିବେ ତେବେ ତାଙ୍କୁ ଚେକ୍‌ଟି ଦେଇ ଦେଲେ ହେଲା-ଯଦି କେହି ନ ମିଳନ୍ତି ତେବେ ବାବୁ କାଉଣ୍ଟର ପାଖକୁ ଚାଲି ଆସି କଡ଼ରୁ ହାତ ଗଳାଇ ଆଗ ଟଙ୍କା ନେଇ ଯିବାକୁ କୁଣ୍ଠିତ ହୁଅନ୍ତି ନାହିଁ । ଖାଲି କ'ଣ ବ୍ୟାଙ୍କରେ, ଏମାନଙ୍କ ଆଧିପତ୍ୟ ଆପଣ ସିନେମା ହଲ୍, ପୋଷ୍ଟ ଅଫିସ୍, ରେଲ୍ ଷ୍ଟେସନ କି କଣ୍ଟ୍ରୋଲଦୋକାନରେ ନିଶ୍ଚୟ ଦେଖିଥିବେ । ସେମାନଙ୍କର ଦୌରାତ୍ମ୍ୟ ଆପଣ ନିଶ୍ଚୟ ବସ୍ କି ଟ୍ରେନରେ ଗଲା ବେଳେ ଉପଲବ୍ଧି କରିଥିବେ । ଅନ୍ୟମାନେ ବସିବାକୁ ସିଟ୍‌ଟିଏ ନଥିଲେ ମଧ୍ୟ ସେମାନେ ଦୁଇଟି ସିଟ୍ ମାଡି ବସନ୍ତି । ଆଉ କେତେକ ସୁବିଧାବାଦୀ ପ୍ଲାଟଫର୍ମରେ ଟ୍ରେନ ପହଞ୍ଚିବା ପୂର୍ବରୁ ଭିତରୁ ବଗିର ଦ୍ୱାର ବନ୍ଦ କରି ଦିଅନ୍ତି-ଅନ୍ୟମାନେ ପଛେ ଟିକେଟ କରି ଗାଡ଼ିରେ ନ ଯାଆନ୍ତୁ -ସେମାନେ କେମିତି ଆରାମରେ ଶୋଇ ଶୋଇ ଯିବେ ତାହା ଚିନ୍ତା କରନ୍ତି । ସୁବିଧାବାଦୀମାନେ ଆକାଶରୁ କଇଁଆ ଆଉ ଚିଲିକାରୁ

ମାଛ ଧରିବାକୁ ସର୍ବଦା ଚେଷ୍ଟା କରନ୍ତି । କିପରି ବିନା ପରିଶ୍ରମ ଓ ବିନା ମୂଲ୍ୟରେ ଶହେକୁ ଦୁଇଶହ କରିବେ, ସେ ପାଇଁ ମଧ୍ୟ ଅହରହ ସଂଗ୍ରାମ ଚଳାନ୍ତି-ବରଂ, ସେ ଅସାଧୁ ଉପାୟ ହେଉ, ସେ ପ୍ରତି ତାଙ୍କ ମନରେ ଟିକେ ହେଲେ ଶଙ୍କା କି ଅନୁଶୋଚନା ନଥାଏ । ''ବୁଝି ବିଚାରି କାର୍ଯ୍ୟ କଲେ, ପ୍ରମାଦ ନ ପଡ଼ଇ ଭଲେ'' ନୀତି ବାକ୍ୟଟିକୁ ସେମାନେ ପାଶୋରି ଦେଇଥାନ୍ତି । ଦବାନବା ଓ ଅତିଥି ସତ୍କାର ନାଆଁ ଶୁଣୁ ଶୁଣୁ ସେମାନଙ୍କ ନାହି ଫକ୍‌ଫକ୍ ହୋଇ ଡିଏଁ-ଯଦି ସେମାନଙ୍କ ଘରକୁ କେବେ ଅତିଥି କି ବନ୍ଧୁବାନ୍ଧବ ଆସନ୍ତି, ତେବେ ସେମାନଙ୍କୁ ଦେଖୁ ଦେଖୁ ତାଙ୍କ ମୁହଁ ଖଟା ହୋଇଯାଏ-ସତେ ଯେମିତି ସେମାନଙ୍କର କିଏ ପାଆଁଶ ହଜାରେ ନେଇ ଯାଇଛି-କିପରି ବନ୍ଧୁଙ୍କୁ ଯେନତେନ ପ୍ରକାରେ ବିଦା କରିବେ, ସେ ପାଇଁ ଉପାୟ ଚିନ୍ତା କରି ମନେମନେ ହସି କୁହନ୍ତି-

''ଆସିଲ ବନ୍ଧୁ ଭଲ କଲ, ବସିବାକୁ ନାହିଁ ଠାଆ ।
ଯେଉଁ ବାଟେ ବାଟେ ଆସିଲ ବନ୍ଧୁ, ସେଇ ବାଟେ ବାଟେ ଯାଆ ।''

ବିଚରା ବନ୍ଧୁ ଉପଯୁକ୍ତ ଆତିଥ୍ୟ ନପାଇ ଦୁଇଦିନର କାମକୁ ଗୋଟିଏ ଦିନରେ ସାରି ଶିଘ୍ର ବାହୁଡ଼ି ଯିବାକୁ ବାଟ ଖୋଜନ୍ତି । ''ଦେଇଥିଲେ ପାଇ, ନ ଦେଇଥିଲେ ପଡ଼ିଆ ବାଡ଼ିରେ ଗୋଧନ ଚରାଇ'' ନୀତି ବାକ୍ୟଟିକୁ ସୁବିଧାବାଦୀମାନେ ସଂପୂର୍ଣ୍ଣ ଭୁଲି ଯାଆନ୍ତି । କିନ୍ତୁ, ସେମାନେ ଯଦି ଅନ୍ୟ କାହା ଘରକୁ କୁଣିଆ ହୋଇ ଗଲେ, ତେବେ ଆସିବାକୁ ନାଆଁ ଧରନ୍ତି ନାହିଁ-ବରଂ, କିପରି ସୁବିଧାରେ ସ୍ୱାଦିଷ୍ଟ ଜୋଇଁ କୁଣିଆ ଭୋଜନ ମିଳିବ, ସେ ପାଇଁ ବନ୍ଧୁ ପତ୍ନୀଙ୍କ ଆଗରେ ବନ୍ଧୁଙ୍କର ଏପରି ତାରଫ୍ କରନ୍ତି ଯେ-ବନ୍ଧୁ ପତ୍ନୀ ନିଜ ସ୍ୱାମୀଙ୍କର ତାରିଫ୍‌ରେ ମୁଗଧ୍ ଓ ଉଲ୍ଲସିତ ହୋଇ ନ ତିଅଣ ଛ ଭଜା କରି ପରଷନ୍ତି । ନର ମାୟା ଯେ ନାରାୟଣଙ୍କୁ ଅଗୋଚର ଏ କଥା ବନ୍ଧପତ୍ନୀ ବା କାହୁଁ ଜାଣିବେ ?

ସାହିତ୍ୟ ଜଗତରେ ବି ସେଇ କଥା । ଆଜି କାଲି ଯାହା ଉପରକୁ ଟେକାଟିଏ ପକାଇ ଦେବେ ସେ କହିବ ମୁଁ ଜଣେ ବିଶିଷ୍ଟ କବି । ବରଂ, କେଉଁ ଅକାଳେ ସକାଳେ ସେ ଗୋଟିଏ ଦୁଇଟି କବିତା ଲେଖି ଥାଆନ୍ତୁ । ଖାଲି କ'ଣ ସେତିକି-ସେମାନଙ୍କ ଲେଖା ଯଦି ଉତ୍କୃଷ୍ଟ ବିବେଚିତ ନ ହେଲା କି ପ୍ରକାଶ ନ ପାଇଲା-ତେବେ ସଙ୍ଗେ ସଙ୍ଗେ ସଂପାଦକଙ୍କର ଚଉଦ ପୁରୁଷ ଉଦ୍ଧାର ହୋଇଯାଏ । ତା ପରେ ଅସନ୍ତୁଷ୍ଟ କବି, ନିଜ ଲେଖା ଛପାଇବା ପାଇଁ ରାତାରାତି ବନିଯାଆନ୍ତି ସଂପାଦକ । ବରଂ ଗୋଟିଏ ଦୁଇଟି ସଂଖ୍ୟାପରେ ପତ୍ରିକାଟି ବନ୍ଦ ହେଉ-ତାଙ୍କ ନାଆଁତ ସାହିତ୍ୟ ଇତିହାସରେ ଲିପିବଦ୍ଧ ହୋଇ ରହିବ । ଆଉ କେତେକ ସାହିତ୍ୟିକ ଅଛନ୍ତି-ଯେଉଁମାନେ ବିଭିନ୍ନ ପୁରସ୍କାର ଓ ସମ୍ମାନ ପାଇବା ପାଇଁ, ସୁବିଧାବାଦ କଳକୁ ଏପରି ମୋଡ଼ି ଦିଅନ୍ତି ଯେ ପୁରସ୍କାରଟା ତାଙ୍କୁ ହିଁ ମିଳେ-ଆଉ ଯୋଗ୍ୟ ବିବେଚିତ କବି ଲେଖକଙ୍କ ଭାଗ୍ୟ ଅମଲାମାନଙ୍କ ଫାଇଲ୍ ତଳେ ସବୁଦିନ ପାଇଁ ବନ୍ଦ ହୋଇ ରହିଯାଏ । କେବଳ ସାହିତ୍ୟ ଜଗତରେ ନୁହେଁ,

ଅନ୍ୟାନ୍ୟ ପୁରସ୍କାର କ୍ଷେତ୍ରରେ ମଧ୍ୟ ସୁବିଧାବାଦୀ ମାନଙ୍କର ଅଖଣ୍ଡ ରାଜତ୍ୱ ।

ପ୍ରକାଶକମାନେ ବି ଏଥିରୁ ବାଦ ଯାଆନ୍ତି ନାହିଁ । ଲେଖକ ବିଚରା କେତେ ଚିନ୍ତା କରି, ରାତି ଅନିଦ୍ରା ହୋଇ ନିଜର ମାନସ ସନ୍ତାନକୁ ଜନ୍ମ ଦିଏ । କିନ୍ତୁ, ଦେଖିଲା ବେଳକୁ ପ୍ରକାଶକ ବହି ଛପାଇ, ସମସ୍ତ ଆର୍ଥିକ ଲାଭକୁ ଆତ୍ମସାତ କରେ । ଏପରିକି ପୁସ୍ତକର complimentary copyଟିଏ ମଧ୍ୟ ଦେବାକୁ କୁଣ୍ଠା ପ୍ରକାଶ କରେ ।

ସୁବିଧାବାଦୀମାନେ ସାଂପ୍ରତିକ ରାଜନୈତିକ ନେତାମାନଙ୍କ ପରି ଅନୁଷ୍ଠାନ ପରେ ଅନୁଷ୍ଠାନ ବଦଳାନ୍ତି-ଯଦି ଗୋଟିଏ ଅନୁଷ୍ଠାନରେ ନିଜର ଆଧିପତ୍ୟ ବା ହାକିମଗିରି ନ ଚଳିଲା-କି କିଛି ସ୍ୱାର୍ଥ ହାସଲ ନହେଲା, ତେବେ ସେମାନେ ସେ ଅନୁଷ୍ଠାନ ଛାଡ଼ି, ଆଉ ଏକ ଅନୁଷ୍ଠାନରେ ସାମିଲ୍ ହୁଅନ୍ତି-କିମ୍ବା ନିଜେ ଏକ ଅନୁଷ୍ଠାନ ଗଢ଼ି ତାର କର୍ମକର୍ତ୍ତା ଭାବେ ନିଜର ହାକିମିଗିରି ଓ ଆଧିପତ୍ୟକୁ ଉପଯୋଗ କରନ୍ତି ।

ଏମିତି ସବୁ ଉଦାହରଣ ଦେଇ ବସିଲେ ଗୋଟିଏ ଇତିହାସ କି ପୁରାଣ ହେବ । ତେଣୁ, ଭାତ ହାଣ୍ଡିରୁ ଗୋଟିଏ ଚିପିଲେ ଯାହା, ସବୁ ଚିପିଲେ ସେଇଆ ପରି- ସୁବିଧାବାଦୀମାନଙ୍କର ସବୁ ଗୁଣ ଗାରିମା ପରଖିବାର ଆବଶ୍ୟକତା ନାହିଁ । ଏହି ସୁବିଧାବାଦର ଛାୟା ଆମର ଅର୍ଥନୀତି, ରାଜନୀତି, ସାହିତ୍ୟ ଓ ସଂସ୍କୃତି ସବୁକୁ ଆଜି ଆଚ୍ଛନ୍ନ କରି ବସିଛି । ଅନ୍ୟର ଶ୍ରମ-ସାଧନାର ବିଶାଳଗଣ୍ଡି ଭିତରୁ ହିଁ ଏହି ସୁବିଧାବାଦର ଜନ୍ମ । ଏମାନେ ସବୁବେଳେ ଦେଖିବାକୁ ଏକାପରି । ବାହାରେ ଭିତରେ ଯାହା କିଛି ହେଉନା କାହିଁକି, ଏମାନଙ୍କର କିଛି ହୁଏ ନାହିଁ । ଏମାନେ ସଦା ଚଳ ଚଞ୍ଚଳ । ଗ୍ରୀଷ୍ମ ଏମାନଙ୍କୁ ତାପ ଦେଇ ପାରେ ନାହିଁ-କି ବର୍ଷା ଭିଜାଇ ପାରେ ନାହିଁ । ଝଡ଼ି ମରୁଡ଼ିରେ ବି ଏମାନଙ୍କର କିଛି କ୍ଷତି ହୁଏ ନାହିଁ । ଏମାନଙ୍କର ସବୁଦିନେ ପୁନେଇ-ଆଉ ସବୁ ଦିନେ ପୁଷମାସ । ଏମାନେ ପଙ୍କ କାଦୁଅକୁ ଯାଆନ୍ତି ନାହିଁ କି ଗୋଡ଼ ଧୁଅନ୍ତି ନାହିଁ ।

କିନ୍ତୁ, ସବୁଦିନେ ଏହି ସୁବିଧାବାଦ କାମ ଦିଏ ନାହିଁ । ଦିନେ ଅନ୍ଧାର ରାତି ଆଲୁଅ ହୋଇଯାଏ -ସେତେବେଳେ ଚୋର ମାଆ ଯଦି କାନ୍ଦେ, ଦୁଆର ଦେଇ କାନ୍ଦିଲା ପରି ଏମାନେ କାନ୍ଦନ୍ତି । ଏଣୁ, ନିଶ୍ଚୟ ଦିନେ ସୁବିଧାବାଦ ସୁ ବିଧା ବାଦରେ ପରିଣତ ହେବ । ଅର୍ଥାତ୍, ଏପରି ଲୋକମାନଙ୍କୁ ସେମାନଙ୍କ କାର୍ଯ୍ୟକଳାପ ପାଇଁ ଉତ୍ତମ ମଧ୍ୟମ ବା ଭଲ ଭାବେ ବିଧା ଖାଇବାକୁ ପଡ଼ିବ । ସେ ସମୟ ଆଉ ବେଶି ଡେରି ନୁହେଁ । ଏଣୁ, ବେଳହୁଁ ସାଧୁ ସାବଧାନ ।



# ସତ କହିବାକୁ କିଆଁ ଡରିବି

ମଣିଷ ଜୀବନର ଆଜି କାଲି କିଛି ଭରସା ନାହିଁ । ତାହା ଯେମିତି ପାଣିର ଗାର । ଯଦିଓ ବିଜ୍ଞାନ ଅନେକ ଅଗ୍ରଗତି କରି ବିଭିନ୍ନ କୌଶଳ ବାହାର କରି ସାରିଲାଣି । ମଣିଷ ଜୀବନକୁ ଯଦି ଏକ ରାସ୍ତା ସହିତ ତୁଳନା କରାଯାଏ, ତେବେ ଏହା କାହାପାଇଁ ଲମ୍ୱାତ କାହା ପାଇଁ କମ୍ । ଜୀବନର ରାସ୍ତା ମାଟି, ଗୋଡ଼ି କି ପିଚୁ ରାସ୍ତା ପରି ରାସ୍ତାଟିଏ ନୁହେଁ ଯେ, ଖରାପ ହୋଇଗଲେ ମାଟି ଗଣ୍ଡାଏ କି ଗୋଡ଼ି କଡେଇଏ ପକାଇ ଦେଇ ମରାମତି କରି ହେବ ? ଜୀବନର ରାସ୍ତା ବଡ଼ ଖସରା । ଏଠି ହାତେ ମାପି ଚାଖଣ୍ଡେ ଚାଲିବାକୁ ହୁଏ । କାରଣ ପଦ ପଦରେ ବିପଦ । ଲୋଭ, ହିଂସା, ଗର୍ବ, ଅହଙ୍କାର ଓ ପରଶ୍ରୀକାତରତା ଆଦି ଆସୁରିକ ପ୍ରବୃତ୍ତି ସହିତ ସ୍ନେହ, ମମତା, ଦୟା, କ୍ଷମା ଆଦି ଦେବସୁଲଭ ଗୁଣରେ ଏହି ରାସ୍ତା ଭରପୁର । ପ୍ରତି ପଦକ୍ଷେପରେ ସତର୍କତା ଅବଲମ୍ବନ ନକଲେ, କେଉଁଠି ଯେ ପାଦ ଖସି ଯାଇ କଚଡ଼ା ଖାଇବାକୁ ହେବ, ତାହା ନିଜେବି ଜାଣିବା ମୁସ୍କିଲି । ଦେଖଣାହାରୀମାନେ ସମବେଦନା ପ୍ରକାଶ କରିବା ପରିବର୍ତ୍ତେ ଠୋ ଠୋ ହସି ଉପହାସ କରନ୍ତି । ନ ଦେଖିଲା ଲୋକ ମଧ୍ୟ ଅନ୍ୟ ଠାରୁ ଶୁଣି ପରିହାସରେ ଆଙ୍ଗୁଠି ଦେଖାଇଥାନ୍ତି ।

ସବୁ ମାନ-ଅପମାନକୁ ଆପଣେଇ ନେଇ, ସଂଘର୍ଷ ଓ ସମସ୍ୟାକୁ ମୁକାବିଲା କରି ତଥାପି ଆମକୁ ଜୀବନ ରାସ୍ତାରେ ଚାଲିବାକୁ ପଡ଼େ । ଆମ ଭିତରୁ କେହି କେହି ଦେବ ସୁଲଭ ଗୁଣାବଳୀକୁ ଗ୍ରହଣ କରି ଅନ୍ୟକୁ ନିଜର କରୁଥିବା ବେଳେ, ଅନ୍ୟ କେହି ତାର ବିପରୀତ ଧର୍ମ ବା ଗୁଣକୁ ଆଦରି ନେଇ ନିଜର ପ୍ରଭାବ ଓ ପ୍ରତିଷ୍ଠା ବୃଦ୍ଧି କରିବାକୁ ଆପ୍ରାଣ ଉଦ୍ୟମ କରନ୍ତି । ଅଢ଼େଇ ଦିନକୁ ମିଥ୍ୟା ବଢ଼େଇ କରି ସେ ଏ ସୃଷ୍ଟିକୁ ତାଡ଼ି ଓପାଡ଼ି ଫୋପାଡ଼ି ଦେବାକୁ ଚେଷ୍ଟା କରେ । ତା'ର ଏହି କାର୍ଯ୍ୟକଳାପର ଫଳ କ'ଣ ଫଳିବ-ସେଥିପ୍ରତି ତା'ର ନିଘା ନଥାଏ ।

ଅନ୍ୟର ଭଲମନ୍ଦ, ଦୁଃଖ ସୁଖରେ ଭାଗୀ ହେବା ପାଇଁ ଆଜି ମଣିଷ ପାଖରେ ସମୟ ନାହିଁ । ଅନ୍ୟ ପକ୍ଷରେ ଭଲମନ୍ଦ, ଦୁଃଖ ସୁଖ ପଚାରୁଥିବା ଲୋକଟି ଯଦି କେବଳ ଆମକୁ ଭଲ କହିଲା, ତେବେ ସିଏ ଆମର ସୁନାପୁଅ । ପାନରୁ ଚୂନ ଟିକେ ଖସି ଗଲେ, ଅର୍ଥାତ୍ ବନ୍ଧୁ ଜଣକ ଯଦି ଆମର କୌଣସି କଥା ବା କାର୍ଯ୍ୟକୁ ବାରି ଦେଲେ ତେବେ କଥା ସରିଲା-ଏକାନ୍ତ ନିଜର ମନେ ହେଉଥିବା ବନ୍ଧୁଙ୍କୁ ଆମେ ଏପରି ପାନେ ଦେଉ

ଯେ ସେ ଅଖା ଧୋଉଥିବ, ଗୁଣ ଗାଉଥିବ । ଜୀବନରେ ଆଉ କେବେ ଆମ ବିରୁଦ୍ଧରେ ମୁହଁ ଖୋଲିବ ନାହିଁ ।

ଆମେ ସମସ୍ତେ ଏବେ ଏକ ବିଷମ ସମୟ ଦେଇ ଗତି କରୁଛୁ । କାରଣ ସମୟ ବଦଳି ଚାଲିଛି । ସମୟ ସହିତ ତାଳ ଦେଇ ଆମର ସବୁ ଚିନ୍ତାଧାରା, ଦୃଷ୍ଟିକୋଣ ଓ ରୁଚି ମଧ୍ୟ କ୍ରମେ ବଦଳିବାରେ ଲାଗିଛି । ପ୍ରକୃତ ସତ କହିବାକୁ ଆଜି ଯେମିତି କାହାରି ଠାରେ ସାହସ ନାହିଁ । ସତ କହିବାର ଇଚ୍ଛାଶକ୍ତି ଆଜି ଯେମିତି ସଂପୂର୍ଣ୍ଣ ଆମ ଠାରୁ ଲୋପ ପାଇଗଲା ପରି ଲାଗୁଛି-ଯିଏ ସତ କହିଲା, ସିଏ ତିନି ପାଞ୍ଚିରୁ ଗଲା- ସତ୍ୟ, ଧର୍ମ ଓ ନ୍ୟାୟର ସଂଜ୍ଞା ଆଜି ସଂପୂର୍ଣ୍ଣ ବଦଳି ଗଲା ପରି ଲାଗୁଛି । ସବୁବେଳେ ସତ୍ ପଥରେ ଚାଲିବା ଓ ସତ କହିବା ଲୋକଙ୍କ ସଂଖ୍ୟା ଆଜି ଆଙ୍ଗୁଠି ଅଗରେ ଗଣି ହୋଇ ଯାଉଛି । କାରଣ ଏହି ପଥ ବଡ଼ ସଂଘର୍ଷପୂର୍ଣ୍ଣ । ତେବେ ମୁଁ ହଲପ କରି କହୁଛି-ସବୁ ସତ କଥାହିଁ ଆପଣଙ୍କ ଆଗରେ କହିବି-ନିଜେ ମଲେ ପଛେ ମରିବି, କିନ୍ତୁ ଷୋଳଣା ସତ କଥା ହିଁ କହିବି ।

ଆଗରୁ କହିଛି ଜୀବନର ରାସ୍ତା ସର୍ବଦା କଣ୍ଟକିତ ଓ ସମସ୍ୟା ବହୁଳ । ଯୁଗ ଆଗଉଛି, ଶିକ୍ଷାର ବିସ୍ତାର ଘଟୁଛି ତଥା ବିଜ୍ଞାନର ନାନା ଉଦ୍‌ଭାବନ ଘଟିବା ସତ୍ତ୍ୱେ ଜୀବନ ଆହୁରି ସଂଘର୍ଷପୂର୍ଣ୍ଣ ଓ ସମସ୍ୟାବହୁଳ ହୋଇ ପଡୁଛି । ଘରୁ ବାହାରିଥିବା ମଣିଷଟି ଯେ କାମଦାମ ସାରି ନିଶ୍ଚିନ୍ତରେ ପୁଣି ଘରେ ପହଞ୍ଚିବ, ତାହା ଆଜି ଗ୍ୟାରେଣ୍ଟି ଦେଇ କେହି କହି ପାରିବେ ନାହିଁ । ଯାନ ବାହାନ ଦୁର୍ଘଟଣା ଠାରୁ ଆରମ୍ଭ କରି ଶତ୍ରୁ ତଥା ଅସାମାଜିକ ଲୋକଙ୍କର ମାରଣାସ୍ତ୍ର ଆକ୍ରମଣ ଆଦି ନାନା ପ୍ରକାର ଭୟ ଆମକୁ ଆଜି ସ୍ୱଚ୍ଛନ୍ଦ ଭାବରେ ଜୀବନ ବିତାଇବା ପାଇଁ ଦେଉନାହିଁ । ଆତ୍ମରକ୍ଷା ପାଇଁ ପ୍ରସ୍ତୁତ ଅସ୍ତ୍ରଶସ୍ତ୍ର ଅନ୍ୟର ମୃତ୍ୟୁର କାରଣ ହେଉଛି । ସେଥିପାଇଁ ଭାଗ୍ୟଚକ୍ର, ଗ୍ରହ ନକ୍ଷତ୍ର ଉପରେ ବିଶ୍ୱାସ ରଖୁଥିବା ମଣିଷ ଆଜି ତଟସ୍ଥ ହୋଇ ରହି ଯାଉଛି । କାରଣ ଭବିଷ୍ୟତ ବାଣୀ ବି ଆଜିକାଲି ଆଉ କାମ କରୁନାହିଁ ।

ଆଜିକାଲି ଯାହା ହାତରେ କ୍ଷମତା ଓ ଟଙ୍କା ପଇସା ଅଛି-ସେ ନିଜକୁ ଈଶ୍ୱର ବା ଭଗବାନ ବୋଲି ମନେ କରୁଛି । ସମଗ୍ର ପୃଥିବୀଟା ତା ହାତ ମୁଠାରେ ବୋଲି ଭାବି ଇନ୍ଦ୍ର ଚନ୍ଦ୍ର ମାନୁନାହିଁ । କ୍ଷମତା ଓ ଧନର ପ୍ରଭାବରେ ସବୁ କିଛି ସମ୍ଭବ ବୋଲି ଭାବୁଥିବା ଆଜିର ମଣିଷ ବୃଥା ଆସ୍ଫାଳନ କରି ନିଜେ କ୍ଷତ ବିକ୍ଷତ ହେବା ସହିତ ଅନ୍ୟକୁ ଲହୁଲୁହାଣ କରୁଛି । କ୍ଷମତାଧାରୀ ଲୋକର କଥାକୁ ଯଦି କିଏ ଗ୍ରହଣ ନ କଲା, ତେବେ କଥା ସଇଲା । ସେ କିପରି ତିନି ପାଞ୍ଚିରୁ ଯିବ, ସେଥିପାଇଁ ଯେତେ କଳ,ବଳ ଓ କୌଶଳ ଅଛି ସେ ସବୁକୁ ଏକତ୍ର କରି ତା ପଛରେ ଲଗାଇ ଦିଆ ଯାଉଛି । ଏହା କ'ଣ ମିଛ କଥା ? ଖବର କାଗଜରୁ ଆମେ ଏମିତି ଅନେକ ଘଟଣା ପଢୁଛୁ । କେଉଁଠି କ୍ଷମତାଧାରୀ ଲୋକ କାହାକୁ ଜୀବନରେ ମାରି ପୋତି ଦେଲାଣି ତ ଆଉ କେଉଁଠି ବିକଳାଙ୍ଗ କରି ଦେଲାଣି । କେଉଁଠି କେଉଁଠି ପ୍ରକୃତ ସତ୍ ପଥରେ ଚାଲୁଥିବା ଲୋକର

ସମସ୍ତ ଧନସମ୍ପତ୍ତି ଲୁଟି ନେଇ ତାକୁ ଦାଣ୍ଡର ଭିକାରୀ କରି ଦିଆଯାଉଛି ତ ଆଉ କେଉଁଠି ଘର ଦ୍ୱାର ପୋଡ଼ି ନଷ୍ଟ କରି ଦିଆଯାଉଛି ।

ସରକାରୀ ସ୍ତରରେ ଆଇନ୍ ତିଆରି କରା ଯାଇଛି ନିର୍ଦୋଷକୁ ସୁରକ୍ଷା ପ୍ରଦାନ କରି ଦୋଷୀକୁ ଦଣ୍ଡ ପ୍ରଦାନ କରିବା ପାଇଁ । କିନ୍ତୁ, ଯେଉଁଠି ରକ୍ଷକ ଭକ୍ଷକ ହେବ- ଆଇନ୍ ରକ୍ଷା କାରୀ ପ୍ରଥମେ ଆଇନ ଭଙ୍ଗ କରିବ, ସେଠି ସାଧାରଣ ଜନତା ବା କ'ଣ କରି ପାରିବେ ? ସାଧାରଣ ନିରୀହ ମଣିଷଟି ଆଜି ଆଇନ ଓ କ୍ଷମତାର ଯୂପ କାଠରେ ବଳି ପଡ଼ି ଆଖି ଲୁହ ଆଖିରେ ମାରୁଛି ସିନା, ମୁହଁ ଖୋଲି ତାର ପ୍ରତିରୋଧ କରି ପାରୁ ନାହିଁ । ଅନ୍ୟାୟ, ଅନୀତି ଓ ଦୁର୍ନୀତି କରୁଥିବା ଲୋକଙ୍କର ବର୍ତ୍ତମାନ ମୁଖ୍ୟ ସ୍ୱର ହୋଇଛି- ''ତୁ ଗୁହାରି କରିବୁ ଯାହାକୁ, ମୁଁ ନିଜର କରିଛି ତାହାକୁ ।'' ଏହା ହେଲା ମାତ୍ର ଗୋଟିଏ ଉଦାହରଣ । ଯଦି ଆମେ ଆମର ଦୈନନ୍ଦିନ ଜୀବନ ରାସ୍ତାରେ ପାଦ ଥାପି ଟିକେ ତୀକ୍ଷଣ୍ ଦୃଷ୍ଟି ବୁଲାଇ ଆଣିବା, ତେବେ ଶହ ଶହ ଘଟଣା ଆମ ଆଖି ଆଗରେ ଟେଲିଭିଜନ ପରଦା ପରି ନାଚି ଉଠିବ ।

ଆଜିର ମଣିଷ ଠାରେ ଲୋଭର ମାତ୍ରା ଏପରି ବଢ଼ି ବଢ଼ି ଚାଲିଛି ଯେ ସେ ଯାବତୀୟ ଅପକର୍ମ କରିବାକୁ କୁଣ୍ଠିତ ହେଉନାହିଁ । ଯେମିତି କେଉଁଠି ସାମାନ୍ୟ ଘରବାଡ଼ି ବା ଟଙ୍କା ପଇସା ପାଇଁ ଭାଇ ଭାଇକୁ, ବା ଆତ୍ମୀୟ ଆତ୍ମୀୟକୁ ଜୀବନରେ ମାରି ଦେଉଛି ତ ଆଉ କେଉଁଠି ସ୍ତ୍ରୀ କଥାରେ ପଡ଼ି ପୁଅ ବୟସ୍କ ବାପମାଆଙ୍କୁ ଘରୁ ତଡ଼ି ଦେଉଛି । ଆଉ କେଉଁଠି ସ୍ତ୍ରୀ ନାମରେ ଥିବା ଧନ ସମ୍ପତ୍ତି ବା ଇନ୍‌ସୁରାନସ୍ ଟଙ୍କା ନିଜ ହାତମୁଠାକୁ ଆଣିବା ପାଇଁ ସ୍ୱାମୀ ଅଗ୍ନିକୁ ସାକ୍ଷୀ ରଖି ବାହା ହୋଇଥିବା ଧର୍ମପତ୍ନୀକୁ ମୃତ୍ୟୁ ଯନ୍ତା ମଧ୍ୟକୁ ଠେଲି ଦେଉଛି । ଲୋଭ ଆଉ ଆସକ୍ତିର ଶିକାର ହୋଇ କିପରି ଯୌତୁକ ପାଇଁ ଝିଅବୋହୂଙ୍କୁ ମାରି ଦିଆଯାଉଛି ଓ ତାକୁ ସ୍ୱାଭାବିକ ମୃତ୍ୟୁ ବା ଆତ୍ମହତ୍ୟା ରୂପ ଦିଆଯାଇ ପ୍ରମାଣ କରି ଦିଆଯାଉଛି, ତାର ଖବର ଆମେ ସମସ୍ତେ ଜାଣିଲେ ମଧ୍ୟ ତାକୁ ଏକ ସାଧାରଣ ଘଟଣା ଭାବି ଆଡେଇ ଯାଉଛୁ ।

ମାନବିକ ମୂଲ୍ୟବୋଧ ଆଜି ଏପରି ନିମ୍ନଗାମୀ ହେଲାଣି ଯେ-ଅନ୍ୟାୟ, ଅନୀତି ଓ ଦୁର୍ନୀତି ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ପାଇଁ ଆଜି କାହାରି ସାହସ କୁଳଉ ନାହିଁ । ଆପେ ବଞ୍ଚିଲେ ବାପର ନାଆଁ ନୀତିବାଣୀଟିକୁ ଆମେ ଦୃଢ଼ ଭାବରେ ଆପଣେଇ ନେଇଛୁ । ଏହା ଫଳରେ ବିନା ବିରୋଧରେ ସମାଜରେ ଅନ୍ୟାୟର ମାତ୍ରା କ୍ରମେ ବଢ଼ି ବଢ଼ି ଚାଲିଛି ।

ଛୋଟ ଛୋଟ କଥା ଓ ଘଟଣାକୁ ନେଇ ଆନ୍ଦୋଳନ, ରାସ୍ତାରୋକ, ବଜାର ବନ୍ଦ ଓ ପୋଡ଼ାଜଳା ଆଦି ଏକ ସାଧାରଣ ଘଟଣାରେ ପରିଣତ ହୋଇଛି । ସାଧାରଣ ଜନତାଙ୍କୁ ଅସ୍ତ୍ର ଭାବରେ ଗ୍ରହଣ କରି ରାଜନୈତିକ ନେତାମାନେ ନିଜ ସୁଖ ସୁବିଧା ହାସଲ କରିବାରେ ଲାଗିଛନ୍ତି । ଗୋଟିଏ ଦଳର ନୀତି ଓ ପଦକ୍ଷେପ ଅନ୍ୟ ଦଳର ପସନ୍ଦ ହେଉନାହିଁ । ସେଥିପାଇଁ ସବୁବେଳେ ନୂଆ ନୂଆ ଯୋଜନା କରାଯାଇ ଲୋକମାନଙ୍କୁ

ଭୁଆଁ ବୁଲା ଯାଉଛି । ସରକାରୀ ସ୍ତରରେ ଘଟୁଥିବା ଦୁର୍ନୀତିର ବିଲୋପ ପାଇଁ ଯେଉଁ ଇନକ୍ୱାରୀ କମିଶନ ବସୁଛି, ତା'ର କିଛି ସୁଫଳ ମିଳୁନାହିଁ । ଆଇନକାନୁନ ଏକ ଶୃଙ୍ଖଳା ଆଦର୍ଶ ହୋଇ ରହିଯାଉଛି । ରକ୍ଷକ ଭକ୍ଷକ ହେଉଥିବାରୁ ଅନେକ କ୍ଷେତ୍ରରେ ଦୋଷୀ ବଦଳରେ ନିର୍ଦ୍ଦୋଷ ଦଣ୍ଡ ପାଉଛି । ଏ ସମସ୍ତ କଥା ଅଶିକ୍ଷିତ ମହଲ ଅପେକ୍ଷା ଶିକ୍ଷିତ ମହଲରେ ଅଧିକ ଦେଖାଯାଉଛି । କିନ୍ତୁ, ଗାଁ ଗହଳରେ ଅଶିକ୍ଷିତ ଲୋକମାନେ ଅନ୍ୟାୟ ଅନୀତି କରୁଥିବା ବ୍ୟକ୍ତିଟିର ମୂଳପୋଛ କରିବାକୁ ଏକଜୁଟ ହୋଇ ପ୍ରତିରୋଧ କରିବାର ଦେଖାଯାଉଥିବା ବେଳେ ଶିକ୍ଷିତ ମହଲରେ ଠିକ୍ ତାର ଓଲଟା ଫଳ ଫଳୁଛି । ଆମେ ସମସ୍ତେ ସବୁ ଜାଣି ବି ଚୁପ୍ ରହୁଛୁ । ଧନ୍ୟ କହିବା ଆମ ଶିକ୍ଷିତ ପଣିଆକୁ, ଆମ ଚିନ୍ତା ଓ ବିଚାରବୋଧକୁ ।

ଆମର ନୈତିକ ମୂଲ୍ୟବୋଧ କ୍ରମେ କମିବାରେ ଲାଗିଛି-ସାମାନ୍ୟ ସୌଜନ୍ୟତା ଓ ପରୋପକାର ଗୁଣ କ୍ରମେ ଆମ ଠାରୁ ଦୂରେଇ ଯାଉଛି-ପର ନିନ୍ଦା ଓ ପରଚର୍ଚ୍ଚା ଆମର ଏକ ମୁଖ୍ୟ ରୁଚିରେ ପରିଣତ ହୋଇଛି । ଏହା ଦ୍ୱାରା ପାଖ ପଡୋଶୀଙ୍କ ମଧ୍ୟରେ ଆଦୌ ସୁସମ୍ପର୍କ ରହୁନାହିଁ-ସାମାଜିକ ବ୍ୟବସ୍ଥା ଓ ନିରାପତ୍ତାର ଅବକ୍ଷୟ ଫଳରେ ଧର୍ଷଣ, ଯୌନ ବ୍ୟଭିଚାର ଆଦି ନାନା ଅରୁଚିକର କାର୍ଯ୍ୟର ମାତ୍ରା ବଢ଼ିବାରେ ଲାଗିଛି । ଶିକ୍ଷା ତଥା ଜନସେବାରେ ନିୟୋଜିତ କେତେକ ଅଧିକାରୀ ଯୌନ ବ୍ୟଭିଚାରରେ ଲିପ୍ତ ରହି ସମସ୍ତ ପରିବେଶକୁ କଳୁଷିତ କରୁଛନ୍ତି । ତ୍ୟାଗ, ସେବା ଓ ପରୋପକାର ଗୁଣର ଆଜି ମୂଲ୍ୟ ନଥିବା ପରି ମନେ ହେଉଛି । ଯୁବକ-ଯୁବତୀମାନଙ୍କର ପାଶ୍ଚାତ୍ୟ ରୁଚିବୋଧ ଓ ବେଶଭୁଷା ପ୍ରତି ଅଧିକ ଆଗ୍ରହ ଫଳରେ ପାରିବାରିକ ଅଶାନ୍ତି ବଢ଼ି ବଢ଼ି ଚାଲିଛି । ସହରରୁ ଏହି ରୁଚିବୋଧ ସଂକ୍ରାମକ ରୋଗ ଭଳି କ୍ରମେ ଗ୍ରାମାଞ୍ଚଳକୁ ପ୍ରସାରିତ ହେବାରେ ଲାଗିଛି ।

ପୂଜ୍ୟପୂଜା, ଭକ୍ତି, ଦେଶପ୍ରେମ ଓ ଜାତୀୟତା ଆଦି ଭାବ ସତେ ଯେମିତି ଏକ ପ୍ରହସନରେ ପରିଣତ ହେଲାଣି । କବି, ଲେଖକ, ଦେଶ ସେବକ ଓ ସ୍ୱାଧୀନତା ସଂଗ୍ରାମୀଙ୍କ ଠାରୁ ଆମ ପିଲାଏ ଅଧିକ ସିନେମା ଷ୍ଟାର୍ ବା କ୍ରିକେଟ ଖେଳାଳୀଙ୍କୁ ମନେ ରଖି ତାଙ୍କ ଦ୍ୱାରା ପ୍ରଭାବିତ ହେଉଛନ୍ତି । ଏହାର ପ୍ରମାଣ କୌଣସି ଜାତୀୟ ଦିବସର ଉପସ୍ଥାନ ଓ ଅର୍କେଷ୍ଟ୍ରାର ଉପସ୍ଥାନରୁ ପାଇ ପାରିବା । ଗୋଷ୍ଠୀ କନ୍ଦଳ କେବଳ ରାଜନୈତିକ ନେତାମାନଙ୍କ ମଧ୍ୟରେ ନାହିଁ, ସମାଜର ପ୍ରତ୍ୟେକ ସ୍ତରକୁ ଏହା ବ୍ୟାପିବାରେ ଲାଗିଛି । କୌଣସି କାରଣରୁ ଅସନ୍ତୁଷ୍ଟ ସାହିତ୍ୟିକ ଯେମିତି ନୂଆ ଅନୁଷ୍ଠାନଟିଏ ଗଢ଼ି ତାର ସଭାପତି ବା ସଂପାଦକ ଆସନ ଅଳଙ୍କୃତ କରୁଛି, ସେହିପରି ନୂଆ ପତ୍ରିକାଟିଏ ବାହାରକରି ନିଜକୁ ତାର ସଂପାଦକ ଭାବରେ ଅବସ୍ଥାପିତ କରୁଛି । ବରଂ ସେ ପତ୍ରିକା ଗୋଟିଏ ଦୁଇଟି ସଂଖ୍ୟା ପରେ ବନ୍ଦ ହୋଇଯାଉ ।

ଏହି ନିକଟରେ ଆମେ ସ୍ୱାଧୀନତାର ଷାଠିଏ ବର୍ଷ ପୂର୍ତ୍ତି ଉତ୍ସବ ଆନନ୍ଦ ଓ ଉଲ୍ଲାସ ସହକାରେ ପାଳନ କଲେ । ସରକାରୀ ସ୍ତରରେ ଏହା ଯେପରି ପାଳନ କରାଗଲା,

ବେସରକାରୀ ସ୍ତରରେ ସେପରି ପାଳନ କରାଗଲା ନାହିଁ । ଯଦି ଏହାର ଠିକ୍ ଭାବରେ ସମୀକ୍ଷା କରାଯାଏ, ତେବେ ସାଧାରଣ ଜନତାଙ୍କ ଉପରେ ଏହାର କୌଣସି ପ୍ରଭାବ ପଡି ନଥିବା ଦେଖିବାକୁ ମିଳିବ । କାରଣ ଆର୍ଥିକ ଓ ସାମାଜିକ କ୍ଷେତ୍ରରେ ଆମେ ଏବେ ସୁଦ୍ଧା ସ୍ୱାଧୀନ ହୋଇ ନାହୁଁ । ଆର୍ଥିକ କ୍ଷେତ୍ରରେ ଦେଖିଲେ ଧନୀ ଅଧିକରୁ ଅଧିକ ଧନୀ ହେଉଥିବା ବେଳେ, ଗରିବ ଅଧିକରୁ ଅଧିକ ଗରିବ ହେଉଛି । କୌଳିକ ବୃତ୍ତିର ବିଲୋପ ହେତୁ ଲୋକେ ନିଜର ବୃତ୍ତି ହରାଇ ଦୁଃଖରେ କାଳାତିପାତ କରୁଛନ୍ତି । କାରଣ ଆଧୁନିକ ଜ୍ଞାନ କୌଶଳର ବିକାଶ ହେତୁ, କୁମ୍ଭାର ଆଉ ହାଣ୍ଡି ମାଠିଆ ଗଢୁ ନାହିଁ । ଯେଉଁଠି ଗଢ଼ା ଯାଉଛି ସେଠି ତାକୁ ମାଟି ଓ କାଠ ସବୁ କିଣିବାକୁ ପଡୁଥିବାରୁ ପ୍ରସ୍ତୁତ ହାଣ୍ଡି ମାଠିଆର ମୂଲ୍ୟ ଅଧିକ ହେଉଛି । ଯାହାକୁ କିଣିବାକୁ ଲୋକେ ରାଜି ନୁହଁନ୍ତି । କାରଣ ତା ସହିତ ସିଲ୍‌ଭର, ହଣ୍ଡାଲିୟମ, ଷ୍ଟିଲ୍ ଓ ପିତ୍ତଳର ପ୍ରତିଯୋଗିତା ଚାଲୁଛି । ସେ ସବୁ ଅଧିକ ସ୍ଥାୟୀ ହୋଇଥିବାରୁ ଲୋକେ ତାକୁ ଅଧିକ ପସନ୍ଦ କରୁଛନ୍ତି । ସେହିପରି କମାର ପ୍ରସ୍ତୁତ କରୁଥିବା ଲୁହା ସାମଗ୍ରୀ ସହିତ ଟାଟା ବିରଳା ଆଦି ବଡ଼ ବଡ଼ କମ୍ପାନୀମାନେ ପ୍ରତିଯୋଗିତା କରୁଛନ୍ତି-ଯାହା ଫଳରେ କମାର ପ୍ରସ୍ତୁତ ସାମଗ୍ରୀ କିଣିବା ପାଇଁ ଲୋକେ ଆଗ୍ରହୀ ନୁହଁନ୍ତି । ଆର୍ଥିକ କ୍ଷେତ୍ରରେ ଅଧିକ ତାରତମ୍ୟ ହେତୁ, ସମାଜରେ ନାନା ଅନୈତିକ କାର୍ଯ୍ୟ ବଢ଼ି ବଢ଼ି ଚାଲିଛି । ସାମାଜିକ କ୍ଷେତ୍ରରେ ମଧ୍ୟ ସେହି ଜାତି, ଧର୍ମ, ଛୁଆଁ ଅଛୁଆଁ ଆଦି ଭେଦଭାବ ଏବେ ସୁଦ୍ଧା ଆମ ମନରୁ ଦୂରୀଭୂତ ହୋଇ ନାହିଁ । ଏ ସବୁର ବିଲୋପ ପାଇଁ ଆଉ ଏକ ଗଣ ଆନ୍ଦୋଳନର ନିଶ୍ଚୟ ଆବଶ୍ୟକତା ରହିଛି ।

ଏ ସବୁ ବ୍ୟତୀତ କମ୍ କାମ କରି ଅଧିକ ଲାଭର ଆଶା, ସରକାରୀ ଅର୍ଥ ତୋଷରପାତ, ଠିକାଦାରୀ ଓ ଅନ୍ୟାନ୍ୟ ସରକାରୀ ଯୋଗାଣ କ୍ଷେତ୍ରରେ କୌଣସି କାର୍ଯ୍ୟ ନକରି ମିଥ୍ୟା ବିଲ୍ ମାଧ୍ୟମରେ ସରକାରୀ ଟଙ୍କା ତୋଷରପାତ ଆଦି ଯାବତୀୟ ସମାଜ ବିରୋଧୀ କାର୍ଯ୍ୟ ସମାଜରେ କ୍ରମେ ବଢ଼ି ବଢ଼ି ଚାଲିଛି । ଯଦି କୌଣସି ସଚ୍ଚୋଟ କର୍ମଚାରୀ ଏହା କରାଇ ଦେବେ ନାହିଁ ବୋଲି ମୁହଁ ଖୋଲିଲେ, ତେବେ ତାଙ୍କୁ ଧମକ, ହତ୍ୟା, ବଦଳି, ଛଟେଇ ଆଦି ବିଭିନ୍ନ ଦଣ୍ଡରେ ଦଣ୍ଡିତ ହେବାକୁ ପଡୁଛି । କୌଣସି କାର୍ଯ୍ୟର ଭଲ ଦିଗକୁ ଗ୍ରହଣ ନ କରି ତାର ଖରାପ ଦିଗକୁ ଲୋକେ ଗ୍ରହଣ କରୁ ଥିବାରୁ ପ୍ରକୃତ କଥା କହୁଥିବା ଲୋକଟି ଉପହସିତ ହୋଇ ସେଥିରୁ ନିଷ୍କୃତି ଚାହୁଁଛି । ତାର ଆଗ୍ରହ ସତ୍ତ୍ୱେ ସେ କୌଣସି ପରିବର୍ତ୍ତନ ପାଇଁ କିଛି କରିପାରୁ ନାହିଁ ।

'ସାଧୁଜନେ, ଢେଙ୍କିଶାଳରୁ ଢେଙ୍କାନାଳ ଯାଏ ମୁଁ ଅନେକ କଥା କହିଲି- ଏହାକୁ ଆପଣ ଖବର ଅନ୍ତର ବା ହାଲ୍‌ଚାଲ ଯାହା ବି ଭାବି ପାରନ୍ତି । ତା ସହିତ ଅନୁଭବ କରନ୍ତୁ ମୁଁ ଯାହା କହିଲି ତାହା ସତ ନା ମିଛ ! ଏଣିକି ଆପଣମାନେ ସଚେତନ ହୁଅନ୍ତୁ , କ'ଣ କରିବେ ନ କରିବେ-ନଚେତ୍ ନେଡିଗୁଡ଼ କହୁଣୀକୁ ବୋହିଗଲେ ଆଉ କିଛି ଉପାୟ ନଥିବ । ❑❑❑

